# କବିସୂର୍ଯ୍ୟ

ଲେଖକ—

ଅଧ୍ୟାପକ ଶ୍ରୀଧର ଦାସ, ଏମ୍. ଏ., ଡି. ଲିଟ୍.

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ—

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ୍

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୪

ମୂଲ୍ୟ ଛଅ ଅଣା

# ସୂଚୀ

| ବିଷୟ | ପୃଷ୍ଠା |
|---|---|
| ୧ । ଭକ୍ତ-କବି | ୧ |
| ୨ । କବିଙ୍କ ଜନ୍ମସ୍ଥାନ | ୪ |
| ୩ । କବିଙ୍କ ପିତା | ୫ |
| ୪ । ଜନ୍ମ | ୬ |
| ୫ । ବାଲ୍ୟଜୀବନ | ୭ |
| ୬ । ଦେବୀ-ଅନୁଗ୍ରହ | ୯ |
| ୭ । ଜଳନ୍ତର ଗମନ | ୧୧ |
| ୮ । କବିସୂର୍ଯ୍ୟ ଉପାଧି | ୧୨ |
| ୯ । ଚନ୍ଦ୍ରକଳା | ୧୩ |
| ୧୦ । ଦେବାଳୀ | ୧୪ |
| ୧୧ । ଅଠଗଡ଼ ଯାତ୍ରା | ୧୫ |
| ୧୨ । ପୁରୀରେ ସମ୍ମାନଲାଭ | ୧୬ |
| ୧୩ । ମନ୍ଦସରେ ରାଜଦର୍ଶନ | ୧୯ |
| ୧୪ । ସନନ୍ଦ ପ୍ରାପ୍ତି | ୨୩ |
| ୧୫ । ଜଳନ୍ତର ବାହୁଡ଼ା | ୨୪ |
| ୧୬ । ପୁଣି ଅଠଗଡ଼ରେ | ୨୫ |
| ୧୭ । ପାରଳାରେ | ୨୭ |
| ୧୮ । ମଞ୍ଜୁଷାରେ ମେନେଜର | ୨୮ |
| ୧୯ । ତିରୋଧାନ | ୨୯ |

## —ଭକ୍ତ-କବି—

କେତେଦିନ ପାଇଁ ପୁରୀ ଜଗନ୍ନାଥଙ୍କ ମନ୍ଦିରରେ ଗୋଟିଏ ଅପୂର୍ବ ଦୃଶ୍ୟ ଲୋକେ ଦେଖିବାକୁ ପାଇଲେ । ଜଗନ୍ନାଥ ଦର୍ଶନକୁ ପ୍ରତ୍ୟହ ସହସ୍ର ସହସ୍ର ଲୋକ ଆସନ୍ତି, କିଏ କେଉଁ ପ୍ରକାରେ ଜଗନ୍ନାଥଙ୍କଠାରେ ତାଙ୍କର ଭକ୍ତି ଜଣାଇ ପ୍ରଣାମ କରି ଚାଲି-ଯାଆନ୍ତି । କେହି କାହା କଥା ପଚାରନ୍ତି ନାହିଁ । କିନ୍ତୁ ଜଣେ ଦୀର୍ଘକାୟ, ଗୌରବର୍ଣ୍ଣବିଶିଷ୍ଟ ବ୍ରାହ୍ମଣ ପ୍ରତ୍ୟହ ସକାଳେ ଓ ସନ୍ଧ୍ୟାରେ ଜଗନ୍ନାଥଙ୍କ ରତ୍ନବେଦୀ ତଳେ ଠିଆ ହୋଇ ହାତ ଯୋଡ଼ି ସ୍ତବ ଗାଉଥିବାର ଦେଖାଗଲା । ତାଙ୍କର ମୁଖମଣ୍ଡଳରୁ ଯେପରି ଗୋଟାଏ ଜ୍ୟୋତି ଫୁଟି ବାହାରୁଥାଏ । ମନ୍ଦିରର ସେବକମାନେ ତଥା ଜଗନ୍ନାଥ ଦର୍ଶନକୁ ଆସିଥିବା ଯାତ୍ରୀମାନେ ତାଙ୍କ ଆଡ଼କୁ ଅନାଇ ରହୁଥାନ୍ତି । କିନ୍ତୁ ବ୍ରାହ୍ମଣଟି କେବଳ ରତ୍ନସିଂହାସନ ଉପରେ ଦୃଷ୍ଟି ରଖି ଉଦ୍‌ଗଦ୍‌ଭାବରେ ସ୍ତବ କରୁଥାନ୍ତି—

ବାଧିବ୍ର ଜାଣି କ୍ଷମା                    କର ନୋହିଲେ ରମା-
ରମଣ ଦଣ୍ଡେ ଦିଅ ଠାଳ
ତୁମ୍ଭଙ୍କୁ ଜଗନ୍ନାଥ                    ଆଜ ମୋ ମନୋରଥ
ଭରତ କର ଦେବ ଗାଳ ! ହେ କୃପାନିଧି !
କରୁଣା-ସିନ୍ଧୁ ବୋଲି କରୁ
କହନ୍ତି ବୁଟେ ତର ମର,
କାଳସର୍ପ ଆପଣ                    କବଳ କର ପ୍ରାଣ-
ପବନମାନଙ୍କୁ ସବୁର । ହେ କୃପାନିଧି । ୧ ।

ଜଳଧି ଅନ୍ତେ ନିଜ                    ଘର ଦେବାଧିରାଜ
ବୁଡ଼ାଇ ଦେଇଛ ଆପଣ,
ତୁମ୍ଭର ସିନା ଯେନ                    ଅଁଷ୍ଟର୍ଣ ନୁହେଁ ଅନ
ଜନର ଘର ବୁଡ଼ା ପଣ । ହେ କୃପାନିଧି !
ଭୁଜଙ୍ଗ ସାମ୍ୟ ଅମ୍ଭ ତୁଲେ
ବଢାଅ ବୋଲି ଅଜ୍ଞା ହେଲେ
ମୁଁ ନୁହେଁ ଘର ବୁଡ଼ା                    ବଢାଇବାକୁ ଛୁଡ଼ା
ହୋଇଛୁ, ବଢାଇବ ଭଲେ । ହେ କୃପାନିଧି । ୨ ।

ତାହାକୁ ବୋଲି ଚକ୍ରୀ                    ଚକ୍ର ଥିବାରୁ ଚକ୍ରୀ
ତୁମ୍ଭେ ତ ବୋଲାଅ ମଣ୍ଡଳେ,
ବୋଲାଇ କୁଣ୍ଡଳୀ ସେ                    ଆପଣ ତ ବଶେଷେ
ଭୂଷିତ ମକର-କୁଣ୍ଡଳେ । ହେ କୃପାନିଧି !
ଅଦୃଶ୍ୟ ହେବାରୁ ତା ପାଦ
ତାହାକୁ ବୋଲି ଗୂଢ଼-ପଦ

ଆପଣା ଚରଣ ତ . ବରଣିଲୁ ଗୁପତ୍ତ
କାହିଁ ତାଠାରୁ ତୁମ୍ଭ ଭେଦ । ହେ କୃପାନିଧି । ୩ ।

* * *

ଭଣଇ କବିସୂର୍ଯ୍ୟ ନାଥ, ନୁହ ଅଧୈର୍ଯ୍ୟ
ଏଣିକ ମହତ୍ତ୍ୱ ନ ଯାଉ,
ମୁଁ ତୁମ୍ଭ ପରଗୃହ କାଣିଲେ କି ବିଗ୍ରହ
ଇତରେ ନ ଜାଣନ୍ତୁ ଆଉ । ହେ କୃପାନିଧି ।
ଯେତେବେଳେ ମୋ ଅନ୍ତ ହେବ
ଏତିକି ମାତ୍ର ମୋତେ ଦେବ
ପରେତରାଜ ଦ୍ୱାର . ସୀମାରୁ ପରିହାର
ଭଣଇ ଯହିଁ ତହିଁ ନେବ । ହେ କୃପାନିଧି । ୧୨ ।

ସ୍ତୁତିଟି ଗାଇ ଗାଇ ତାଙ୍କ ଚକ୍ଷୁରୁ ଲୋତକଧାର ବହିଯାଏ । ସେପରି ମଧୁର କଣ୍ଠରେ ଭକ୍ତି ଓ ଅଭିମାନଭରା ଗୀତ କେହି କେବେ ଗାଇବାର ଶୁଣା ଯାଇ ନ ଥିଲା । ଲୋକେ ଆପଣା ଭିତରେ କଥା-ବାର୍ତ୍ତା ହୁଅନ୍ତି, "ଏ ଭକ୍ତ ଜଣକ କିଏ ? କାହୁଁ ଆସିଛନ୍ତି ? ଏ ଗୀତଟି ଯେଉଁ କବିସୂର୍ଯ୍ୟ ରଚନା କରିଛନ୍ତି, ସେ କିଏ ?" କେହି କହେ, "କବି ଯେ ହେଉ ନା କାହିଁକି, ଲୋକଟି ଜଗନ୍ନାଥଙ୍କର ପରମ ଭକ୍ତ ।" ଆଉ କେହି କହେ, "ସେ ସ୍ୱୟଂ ନିଜେ କବିସୂର୍ଯ୍ୟ, ଏଠାରେ ଜଗନ୍ନାଥ ମହାପ୍ରଭୁଙ୍କ ଘରେ ଆସି କେତେଦିନ ହେଲା ଅଛନ୍ତି ।" ଭକ୍ତ ମନ୍ଦିରରୁ ଚାଲିଯାନ୍ତି; ମାତ୍ର ଲୋକଙ୍କ ମନରେ ଭକ୍ତଙ୍କ ସ୍ତୁତିର କେତେ ପଦ ଅନେକ ବେଳଯାଏ ରହିଯାଏ । ଅଳ୍ପ ଦିନ ଭିତରେ ପ୍ରଚାର ହୋଇ ଲୋକେ ଜାଣିପାରିଲେ ଯେ ଏ ଭକ୍ତ ହେଉଛନ୍ତି ଆଠଗଡ଼ର ରାଜ-ସଭାପଣ୍ଡିତ କବିସୂର୍ଯ୍ୟ ବଳଦେବ ରଥ ।

କୌଣସି କାର୍ଯ୍ୟରେ ସେ ପୁରୀ ଆସିଅଛନ୍ତି । କ୍ରମେ ପୁରୀର ଅନେକ ସଙ୍ଗୀତପ୍ରେମୀ ଓ କାବ୍ୟାମୋଦୀ କବିସୂର୍ଯ୍ୟଙ୍କ ସହିତ ଆଳାପ ଓ ତାଙ୍କର କବିତା ଶ୍ରବଣ କରିବା ପାଇଁ ଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାରଦେଶରେ ଉପସ୍ଥିତ ହେବାକୁ ଲାଗିଲେ । ପୁରୀର ଜାଗା-ମାନଙ୍କରେ, ଆମୋଦପ୍ରମୋଦରେ, ନୃତ୍ୟଗୀତାଦିରେ କବିସୂର୍ଯ୍ୟଙ୍କ ରଚିତ ସଙ୍ଗୀତ ଓ କବିତାମାନ ବିଶେଷଭାବରେ ଶୁଣିବାକୁ ମିଳିଲା ।

ଏହି କବିସୂର୍ଯ୍ୟ ଥିଲେ ଉତ୍କଳର ଶ୍ରେଷ୍ଠ କବିମାନଙ୍କ ମଧ୍ୟରୁ ଅନ୍ୟତମ । ଆଜିକାଲି ମଧ୍ୟ ଓଡ଼ିଶାର ପ୍ରତିପଲ୍ଲୀରେ ତାଙ୍କ ସଙ୍ଗୀତ-ଗୁଡ଼ିକର ବିଶେଷ ଆଦର ରହିଅଛି ।

## —କବିଙ୍କ ଜନ୍ମସ୍ଥାନ—

ପୁରୀଜିଲାର ଦକ୍ଷିଣକୁ ଗଞ୍ଜାମ ଜିଲା ଲାଗିଛି । ଏହି ଗଞ୍ଜାମ ଜିଲାଟି ଇଂରେଜଙ୍କ ଅମଳରେ ବହୁ କାଳ ଯାଏ ମାନ୍ଦ୍ରାଜ ସଙ୍ଗରେ ମିଶି ରହିଥିଲା । ୧୯୩୬ ମସିହାଠାରୁ ଏହା ଓଡ଼ିଶା ସହିତ ମିଶିଛି । କିନ୍ତୁ ଇଂରେଜମାନଙ୍କର ଓଡ଼ିଶା ଅଧିକାର କରିବା ପୂର୍ବେ ଗଞ୍ଜାମ ଶହ ଶହ ବର୍ଷ ଧରି ଓଡ଼ିଶା ଗଜପତିଙ୍କର ଅଧୀନ ଥିଲା । ଏହା କେତେଗୁଡ଼ିଏ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ଥିଲା ଓ ସେଗୁଡ଼ିକର ରାଜାମାନେ ଗଜପତିଙ୍କର ଅଧୀନ ଥିଲେ । ଏବେ ମଧ୍ୟ ଗଞ୍ଜାମରେ ବଡ଼ଖେମଣ୍ଡି, ଅଠଗଡ଼, ଖଲ୍ଲିକୋଟ, ପାରଳା ପ୍ରଭୃତି କେତେଗୁଡ଼ିଏ ବଡ଼ ଜମିଦାରୀ ଅଛି ଓ ସେଗୁଡ଼ିକର ଜମିଦାରମାନେ ରାଜା ବୋଲାନ୍ତି ।

ଗଞ୍ଜାମ ଜିଲା ଓଡ଼ିଶାର ଗୋଟିଏ ପ୍ରଧାନ ଅଙ୍ଗ । ଏହାର ଉତ୍ତରରେ 'ଶୋକପାପୋଦ୍ଧି ଅପ୍‌ସରାଭୁବନ' ଚିଲିକା ଓ ଦକ୍ଷିଣରେ

ମହେନ୍ଦ୍ର ପର୍ବତ । କେଉଁଠାରେ ଘନବନପୂର୍ଣ୍ଣ କ୍ଷୁଦ୍ର ପର୍ବତମାଳା, କେଉଁଠାରେ ବହୁଦୂରବ୍ୟାପୀ ଶ୍ୟାମଳ ଶସ୍ୟକ୍ଷେତ୍ର, କେଉଁଠାରେ କଳକଳନାଦିନୀ ସ୍ରୋତସ୍ୱତୀ ଅବା ପ୍ରକୃତିର ଏସବୁ ମନୋହର ଦୃଶ୍ୟ ଦେଖିଲେ ମନ ଆନନ୍ଦ ଓ ବିସ୍ମୟରେ ଭରିଯାଏ । କବିମାନେ ସାଧାରଣତଃ ପ୍ରକୃତିଭକ୍ତ । ସେମାନେ ପ୍ରକୃତିର ଏପ୍ରକାର କମନୀୟ ଦୃଶ୍ୟ ଦେଖିଲେ ମୁଗ୍ଧ ହୋଇ କବିତାର ଧାର ଢାଳି ଦିଅନ୍ତି । ଗଞ୍ଜାମ ଜିଲ୍ଲାରେ ଯେ ଓଡ଼ିଶାର ଅନେକ ବିଖ୍ୟାତ କବି ଜନ୍ମଗ୍ରହଣ କରି ଯାଇଅଛନ୍ତି, ତାହାର କାରଣ ବୋଧହୁଏ ଏହି ରମଣୀୟ ପ୍ରାକୃତିକ ଦୃଶ୍ୟାବଳୀ । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଧନଞ୍ଜୟ ଭଞ୍ଜ, ରାଜା କୃଷ୍ଣସିଂହ, ଭକ୍ତ ଗୋପାଳକୃଷ୍ଣ, କେଶବ ପଟ୍ଟନାୟକ, ହାସ୍ୟରସିକ ଯଦୁମଣି ପ୍ରଭୃତି କବିମାନେ କାବ୍ୟ କବିତା ଲେଖି ଓଡ଼ିଆ ସାହିତ୍ୟରେ ସ୍ଥାୟୀ ଆସନ ଲାଭ କରିଛନ୍ତି । ଏମାନେ ସମସ୍ତେ ଏହି ଗଞ୍ଜାମ ଜିଲ୍ଲାର ଲୋକ ଥିଲେ । ଗଞ୍ଜାମର ଯେଉଁ କବିମାନେ ଓଡ଼ିଶାରେ ଚିରଦିନ ପାଇଁ ନାମ ରଖି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଓ ବଳଦେବ ପ୍ରଧାନ ।

## —କବିଙ୍କ ପିତା—

ଗଞ୍ଜାମ ଜିଲ୍ଲାରେ ବଡ଼ଖେମୁଣ୍ଡି ଗୋଟିଏ ଶ୍ରେଷ୍ଠ ରାଜ୍ୟ । ଦିଗପହଣ୍ଡି ଗଡ଼ ଏହାର ରାଜଧାନୀ । ଏହି ଗଡ଼ରେ ଜଣେ ବଡ଼ ପଣ୍ଡିତ ଗୋଟିଏ ଚତୁଷ୍ପାଠୀ ସ୍ଥାପନ କରି କେତେକ ଛାତ୍ରଙ୍କୁ ସଂସ୍କୃତ କାବ୍ୟ, ବ୍ୟାକରଣ, ଅଳଙ୍କାର ପ୍ରଭୃତି ଶିକ୍ଷା ଦେଉଥିଲେ । ଏହି ପଣ୍ଡିତଙ୍କର ନାମ ଥିଲା ଉଜ୍ଜ୍ୱଳ ରଥ । ତାଙ୍କପରି ଜଣେ ସଂସ୍କୃତ ପଣ୍ଡିତ ସେକାଳରେ ମଧ୍ୟ ଖୁବ୍ କମ୍ ଥିଲେ । ବଡ଼ଖେମୁଣ୍ଡିର ରାଜା ତାଙ୍କୁ କବିରାଜ ବ୍ରହ୍ମା ଉପାଧି ଦେଇ ଆପଣାର ସଭାପଣ୍ଡିତ

କରି ରଖିଥିଲେ ଏବଂ ତାଙ୍କର ଚଳିବା ପାଇଁ କେତେକ ଜମି ଖଞ୍ଜି ଦେଇଥିଲେ । ରଥ ମହାଶୟ କାବ୍ୟ କବିତା ପ୍ରସ୍ତୁତ ରଚନା କରି ରାଜାଙ୍କୁ ସମୟ ସମୟରେ ଭେଟୁଥିଲେ ।

ବଡ଼ଖେମଣ୍ଡି 'ପରି ଅଠଗଡ଼ ଗଞ୍ଜାମରଃ ଅଭ୍ର ଗୋଟିଏ ରାଜ୍ୟ । ସେଠାରେ ନିପୁରାର ଓଡା ଝବାଲ୍ ଅଭ୍ ଜଣେ ପଣ୍ଡିତ ଥିଲେ । ସେ ମଧ୍ୟ ନାନା ଶାସ୍ତ୍ର ପଢ଼ି ଖ୍ୟାତ ଅର୍ଜି ଥିଲେ । ତା ଛଡ଼ା ସେ ଜଣେ ବଡ଼ ତାନ୍ତ୍ରିକ ଥିଲେ । ତାଙ୍କ ଘରେ ଗୋଟିଏ ଦୁର୍ଗା-ମୂର୍ତ୍ତି ଥିଲା ଏବଂ ଓଡାଏ ତାଙ୍କର ପୂଜା ଆରାଧନା କରୁଥିଲେ । ସମସ୍ତଙ୍କର ବିଶ୍ୱାସ ଥିଲା ଯେ, ମନ୍ତ୍ର ଓ ପୂଜାଦ୍ୱାରା ଓଡାଏ ଠାକୁରାଣୀଙ୍କୁ ବଶ କରିଥିଲେ ଓ ସେ ଯାହା ଠାକୁରାଣୀଙ୍କଠାରୁ ଗୁହୁଁଥିଲେ, ତାହା ପାଇପାରୁଥିଲେ । ଏହି ହେତୁରୁ ଲୋକେ ଯେ ତାଙ୍କୁ କେବଳ ଭକ୍ତି କରୁଥିଲେ ତାହା ନୁହେଁ, ଭୟ ମଧ୍ୟ କରୁଥିଲେ । ଓଡାଙ୍କର ଗୋଟିଏ ପରମା ସୁନ୍ଦରୀ ଓ ଗୁଣବତୀ କନ୍ୟା ଥିଲା । ଉଜ୍ଜ୍ୱଳ ରଥେ ଏହି କନ୍ୟାକୁ ବିବାହ କରି ବଡ଼ଖେମଣ୍ଡି ଗଡ଼ରେ ବାସ କରୁଥିଲେ । ରାଜାଙ୍କ ଅନୁଗ୍ରହରୁ ଉଜ୍ଜ୍ୱଳ ରଥଙ୍କର ସଂସାର ଅତି ସୁଖରେ ଚଳିଯାଉଥିଲା ।

## —ଜନ୍ମ—

ରଥଙ୍କର ଗୋଟିଏ ଝିଅ ଓ ଗୋଟିଏ ପୁଅ । ଝିଅଟିର ନାମ ସୁଲକ୍ଷଣା । ସେ ନାନା ସଦ୍‌ଗୁଣରେ ଭୂଷିତା ଥିଲେ । ପୁଅର ନାମ ହରିହର । ଉଜ୍ଜ୍ୱଳ ରଥେ କନ୍ୟାଟିକୁ ଗୋଟିଏ ସତ୍‌ପାତ୍ର ହସ୍ତରେ ସମର୍ପଣ କରିଦେଲେ ଓ ହରିହରଙ୍କୁ ବିବାହ ଦେଇ ବୋହୂଟିଏ ଗୃହକୁ ଆଣିଲେ । ତାଙ୍କର ମନେ ହେଲା ଯେ, ଏଣିକି ସେ ନିଶ୍ଚିନ୍ତ

ହେବେ; କିନ୍ତୁ ବିଧିର ବିଧାନ ଅନ୍ୟ ପ୍ରକାର । ଝିଅଟି ଅଳ୍ପଦିନ ପରେ ବିଧବା ହୋଇ ପିତାଙ୍କ ଆଶ୍ରୟରେ ଆସି ରହିଲେ । ହରିହରଙ୍କର ନବବିବାହିତା ପତ୍ନୀ ମାତ୍ର ଅଠର ବର୍ଷ ବୟସରେ ପ୍ରାଣତ୍ୟାଗ କଲେ । ରଥଙ୍କ ମନ ଘୋର ଦୁଃଖରେ ପୂର୍ଣ୍ଣ ହେଲା । ବିଧବା କନ୍ୟାର ଦୁର୍ଦ୍ଦଶା ଦେଖି ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ହରିହରଙ୍କୁ ଦ୍ୱିତୀୟଥର ବିବାହ ଦେଇ ରଥେ ଭଙ୍ଗା ଘରକୁ ପୁଣି ଗଢ଼ିବାକୁ ଇଚ୍ଛା ପ୍ରକାଶ କଲେ; କିନ୍ତୁ ହରିହର ଏହି ପ୍ରସ୍ତାବରେ ଆଦୌ ରାଜି ହେଲେ ନାହିଁ । ରଥେ ଭାବିଲେ ଯେ, ତାଙ୍କ କୁଳରେ ପାଣି ଦେବାକୁ ଆଉ କେହି ରହିବେ ନାହିଁ । ସେ ଆକୁଳ ମନରେ ଭଗବାନଙ୍କୁ ଡାକି ମନର ଦୁଃଖ ଜଣାଉଥାନ୍ତି ।

ଭଗବାନ ତାଙ୍କ ଡାକ ଶୁଣିଲେ । ବୃଦ୍ଧ ବୟସରେ ରଥଙ୍କର ଗୋଟିଏ ପୁତ୍ରସନ୍ତାନ ଜାତ ହେଲା । ଇଷ୍ଟଦେବତା ବଳଦେବଙ୍କ ଅନୁଗ୍ରହରୁ ପୁତ୍ରଟି ପାଇଥିବାରୁ ସେ ତାଙ୍କର ନାମ ଅନୁସାରେ ପୁତ୍ରର ନାମ ଦେଲେ 'ବଳଦେବ' । ତାଙ୍କର ଜନ୍ମଦିବସ ହେଉଛି ୧୭୮୯ ମସିହା ମାଘ ମାସ ଶ୍ରୀପଞ୍ଚମୀ ତିଥି ।

## —ବାଲ୍ୟଜୀବନ—

ବଳଦେବ ବୃଦ୍ଧ ପିତାମାତାଙ୍କ ଆଦରମଧ୍ୟରେ ଶୈଶବ ଅତିକ୍ରମ କରି ବାଲ୍ୟ ବୟସରେ ଉପସ୍ଥିତ ହେବାରୁ ରଥେ ତାଙ୍କର ଶିକ୍ଷା ଲାଗି ଚେଷ୍ଟା କଲେ । ସେ ନିଜେ ତାଙ୍କୁ ଓଡ଼ିଆ ଓ ସଂସ୍କୃତ ପଢ଼ାଉଥିଲେ । ସେକାଳରେ ବ୍ରାହ୍ମଣମାନଙ୍କ ମଧ୍ୟରେ ସଂସ୍କୃତ ପାଠର ଆଦର ଥିଲା । ଉକ୍ତ ସ୍ଥଳ ରଥେ ନିଜେ ଥିଲେ ଜଣେ ବଡ଼ ସଂସ୍କୃତ ପଣ୍ଡିତ । ତେଣୁ ସେ ବଳଦେବଙ୍କୁ ସଂସ୍କୃତ ବ୍ୟାକରଣ,

ଅମରକୋଷ ପ୍ରଭୃତି ଶିଖାଇଲେ । ଦଶ ବର୍ଷ ବୟସରେ ବଳଦେବଙ୍କର ଉପନୟନ ହେଲା ।

ଏହାର ଅଳ୍ପ କେତେ ମାସ ପରେ ଉଜ୍ଜ୍ୱଳ ରଥଙ୍କର ପତ୍ନୀ-ବିୟୋଗ ଘଟିଲା । ସେ ଦେଖିଲେ ଯେ, ବଳଦେବଙ୍କର ଉପଯୁକ୍ତ ଯତ୍ନ ନେବାକୁ ଆଉ କେହି ନାହିଁ । ତେଣୁ ସେ ପୁଅର ଓ ତା ନାତି ବଳଦେବଙ୍କୁ ନିଜ ପାଖରେ ରଖିବାକୁ ଇଚ୍ଛା ପ୍ରକାଶ କଲେ । ଫଳରେ ବଳଦେବ ପିତୃ-ଗୃହ ତ୍ୟାଗ କରି ମାତାମହଙ୍କ ନିକଟରେ ଆଠଗଡ଼ରେ ବାସ କରିବାକୁ ଲାଗିଲେ । ଓ ତାଏ ବଳଦେବଙ୍କୁ ସଂସ୍କୃତ କାବ୍ୟ, ଅଳଙ୍କାର, ଦର୍ଶନ ପ୍ରଭୃତି ପଢ଼ାଇଲେ । ବଳଦେବ ପିତାଙ୍କ ନିକଟରେ ସାମାନ୍ୟ ସଂସ୍କୃତ ଶିଖିଥିଲେ । ଏବେ ମାତାମହଙ୍କଠାରୁ ଅଧିକ ଶିକ୍ଷା ପାଇ ପାଣ୍ଡିତ୍ୟ ଅର୍ଜନ କଲେ ।

ସଂସ୍କୃତ କାବ୍ୟସବୁ ଯମକ, ଅନୁପ୍ରାସ ପ୍ରଭୃତି ବିବିଧ ଅଳଙ୍କାରରେ ମଣ୍ଡିତ ଥିବାରୁ ପାଠକମାନଙ୍କର ମନୋହରଣ କରେ । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଏହିସବୁ ସାହିତ୍ୟିକ ଛଟା ଓଡ଼ିଆ ଭାଷାରେ ପ୍ରୟୋଗ କରି ତାଙ୍କର ଲାବଣ୍ୟବତୀ, ବୈଦେହୀଶ ବିଳାସ ପ୍ରଭୃତି କାବ୍ୟ ଲେଖିଥିଲେ । ଏସବୁ କାବ୍ୟ ପାଠ କରି ସେକାଳର ସଂସ୍କୃତ ପଣ୍ଡିତମାନଙ୍କର ଓଡ଼ିଆ ସାହିତ୍ୟପ୍ରତି ଘୃଣା ଅନେକ ପରିମାଣରେ ଦୂର ହୋଇ ଯାଇଥିଲା । ଓ ତାଏ ସଂସ୍କୃତଜ୍ଞ ପଣ୍ଡିତ ଥିଲେହେଁ ଓଡ଼ିଆ କାବ୍ୟମାନଙ୍କରେ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା; ତେଣୁ ସେ ବଳଦେବଙ୍କୁ ସଂସ୍କୃତ ସଙ୍ଗେ ସଙ୍ଗେ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାବଳୀ ସହିତ ପରିଚିତ କରାଇଥିଲେ ।

## —ଦେବୀ-ଅନୁଗ୍ରହ—

ବିପ୍ରବର ଓଡା ଜଣେ ବଡ଼ ତାନ୍ତ୍ରିକ ଥିଲେ ଓ ଦେବୀ-ଆରାଧନାଦ୍ୱାରା ନାନା ଅଦ୍ଭୁତ କାର୍ଯ୍ୟ ସାଧନ କରି ପାରୁଥିଲେ । ମୃତ ମନୁଷ୍ୟର ଦନ୍ତରେ ନିର୍ମିତ ଗୋଟିଏ ମାଳା ଧରି ସେ ପ୍ରତ୍ୟହ ଦେବୀଙ୍କ ମନ୍ତ୍ର ଜପ କରୁଥିଲେ । ଦିନେ ଗଡ଼ର ପିଲମାନେ ବାଣ ମାରି ଖେଳକୌତୁକର ଆୟୋଜନ କରିଥିଲେ; କିନ୍ତୁ ସେହି ସମୟରେ ପ୍ରବଳ ଝଡ଼ ହେବାରୁ ବାଣମାରି ବନ୍ଦ ହେବାର ପ୍ରସ୍ତାବ ହେଲା । ପିଲମାନଙ୍କ ଭିତରୁ ବଳଦେବ ଅତ୍ୟନ୍ତ ଦୁଃଖିତ ହୋଇ କାନ୍ଦ କାନ୍ଦ ଅଜାଙ୍କ ପାଖରେ ବାଣମାରି ବନ୍ଦ ହେବା କଥା କହିଲେ । ଅଜା ବଳଦେବଙ୍କୁ ଆଶ୍ୱାସନା ଦେଇ କହିଲେ, "ଏହିକ୍ଷଣି ପବନ ବନ୍ଦି ହୋଇଯିବ; ତୁମ୍ଭେମାନେ ବାଣ ମାରି ଖେଳପାରିବ ।" ଏହାପରି କହି କିଛି ସମୟ ସେ ଦେବୀଙ୍କ ମନ୍ଦିର-ମଧ୍ୟରେ ଜପ କଲେ । ସତକୁ ସତ ଗ୍ରାମମଧ୍ୟରେ ପବନର ବେଗ ଆଉ ରହିଲା ନାହିଁ । ପିଲମାନେ ଆନନ୍ଦରେ ବାଣ ମାରି ଖେଳିଲେ ।

ସେଦିନ ବଳଦେବ ଜାଣିପାରିଲେ ଯେ, ମନ୍ତ୍ର ଓ ଜପ କରି ଜାଣିଲେ ଅନେକ ଅଦ୍ଭୁତ କାମ କରି ହେବ; ତେଣୁ ସେ ଅଜାଙ୍କୁ ବାରମ୍ବାର ଅନୁରୋଧ କଲେ, "ମୋତେ ମନ୍ତ୍ର ଶିଖାଇଦିଅ ।" କିନ୍ତୁ ଓଡାଏ କୌଣସିମତେ ବଳଦେବଙ୍କୁ ମନ୍ତ୍ରଶିକ୍ଷା ଦେଲେ ନାହିଁ । ତାଙ୍କର ଧାରଣା ଥିଲା, ଦେବୀ-ଉପାସକ ତାନ୍ତ୍ରିକମାନେ ବଂଶହୀନ ହୁଅନ୍ତି ।

ସେଦିନ ରାତିରେ ଓଡାଏ କିଛି ଦୁଧ ପିଇ ରହିବାର ବ୍ୟବସ୍ଥା କରିଥିଲେ । ଦୁଧ ଆସିବାରୁ ଓଡାଏ ବଳଦେବଙ୍କୁ

କହିଲେ, "ଯା, ଏ ଦୁଧ ଗିନାକ ଠାକୁରାଣୀଙ୍କ ମୁହଁ ପାଖରେ ଧରି ତାଙ୍କୁ ପିଇବାକୁ କହିବୁ ।" ବଳଦେବ ବାଳକସୁଲଭ ବିଶ୍ୱାସରେ ତାହାହିଁ କଲେ । ଅତି ଅଶ୍ଚର୍ଯ୍ୟର କଥା, ବଳଦେବ ଦେଖିଲେ ଯେ, ଗିନାରୁ ଦୁଧତକ ଶେଷ ହୋଇଗଲା । ବଳଦେବ ଫେରିଆସି ଅଜାଙ୍କ ପାଖରେ ଖାଲି ଗିନାଟି ରଖିଦେଇ କହିଲେ, "ଅଜା, ଠାକୁରାଣୀଙ୍କୁ ଦୁଧ ପିଆଇଦେଇ ଅସିଲି ।" ଓଡ଼ାଏ ଟିକଏ ହସି କହିଲେ, "ତୁ ପୁଣି ଯା, ଠାକୁରାଣୀଙ୍କୁ ପଚାରିବୁ ତୁ ସବୁ ଦୁଧ ପିଇଦେଲୁ, ଅଜା ଆଜି ରାତିରେ ଉପାସରେ ରହିବ କିନା !"

ବଳଦେବ ପୁଣି ଦେବୀମୂର୍ତ୍ତିଙ୍କ ନିକଟକୁ ଯାଇ ସେହିପରି କହନ୍ତେ ପାତ୍ରଟିକୁ ତାଙ୍କ ବକ୍ଷ ନିକଟରେ ଧରିବାପାଇଁ ଦେବୀ ବଳଦେବଙ୍କୁ ଦେଖାଇଦେଲେ । ବଳଦେବ ସେହିପରି କଲେ । ପାତ୍ରଟି ପୁଣି ଦୁଗ୍ଧରେ ପୂରିଗଲା । ବଳଦେବ ତାହାକୁ ଅଣି ଅଜାଙ୍କ ପାଖେ ଉପସ୍ଥିତ ହୋଇ ସମସ୍ତ ଘଟନା ବର୍ଣ୍ଣନ କଲେ । ଓଡ଼ା ସେହି ଦୁଧ ନିଜେ ନ ପିଇ ବଳଦେବଙ୍କୁ ପିଇବାକୁ ଦେଲେ । ଏହିପରି ଦେବୀଙ୍କ ଅନୁଗ୍ରହ ପାଇ ବଳଦେବ ଅପୂର୍ବ ଶକ୍ତିର ଅଧିକାରୀ ହେଲେ । ସେ ଥରେ ଯାହା ପଢ଼ୁଥିଲେ, ତାହା ଚିରଦିନ ପାଇଁ ତାଙ୍କ ମନରେ ରହି ଯାଉଥିଲା । ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଦେଖି ଲୋକେ ବିସ୍ମିତ ହୋଇ ଯାଉଥିଲେ । ବଳଦେବ ଆଠଗଡ଼ରେ କେତେକ ବର୍ଷ କଟାଇ ବଡ଼ଖେମୁଣ୍ଡିକୁ ଫେରି ଅସିଲେ ।

ବୃଦ୍ଧ ଉଜ୍ଜ୍ୱଳ ରଥେ ବଳଦେବଙ୍କର ବିବାହ କାର୍ଯ୍ୟ ଶେଷ କରି ନିଶ୍ଚିନ୍ତ ହେବାକୁ ମନ କଲେ । ରଥେ ନାନା ସ୍ଥାନରେ ବୁଲି ଶେଷରେ ପୁରୀ ବାସେଲୀ ସାହିର ରାମକୃଷ୍ଣ ମିଶ୍ରଙ୍କ କନ୍ୟା ରୁକ୍ମଣୀଙ୍କ

ସହିତ ବଳଦେବଙ୍କର ବିବାହ ଦେଲେ । ସେତେବେଳକୁ ବଳଦେବଙ୍କର ବୟସ ପନ୍ଦର ବର୍ଷ ଓ ରତ୍ନମଣି ବାଳିକା ମାତ୍ର ।

## —ଜଳନ୍ତ୍ରର ଗମନ—

ବଳଦେବଙ୍କ ବିବାହର ପ୍ରାୟ ଛଅ ମାସ ପରେ ଉଜ୍ଜ୍ୱଳ ରଥେ ଚିରଦିନ ପାଇଁ ଆଖି ବୁଜିଲେ । ଘରେ ରହିଲେ ହରିହର, ବଳଦେବ, ସେମାନଙ୍କ ବିଧବା ଭଉଣୀ ଓ ବଳଦେବଙ୍କ ନବ-ବିବାହିତା ପତ୍ନୀ । ଏହି କୁଟୁମ୍ବର ପୋଷଣ ଭାର ଏବେ ବଡ଼ଭାଇ ହରିହରଙ୍କ ଉପରେ ପଡ଼ିଲା । ମାତ୍ର ବିପଦ ଏକୁଟିଆ ଆସେ ନାହିଁ—ଗୋଟିକ ପରେ ଗୋଟିଏ ଆସୁଥାଏ । ଉଜ୍ଜ୍ୱଳ ରଥେ ରାଜାଙ୍କଠାରୁ କିଛି ଭୂମି ବୃତ୍ତି ପାଇ ସୁଖସ୍ୱଚ୍ଛନ୍ଦରେ କୁଟୁମ୍ବ ଚଳାଇ ନେଉଥିଲେ । ତାଙ୍କ ମୃତ୍ୟୁପରେ ରାଜା ସେହି ବୃତ୍ତିତକ ଛଡ଼ାଇ ନେଲେ । ହରିହରଙ୍କୁ ଘୋର ଅଭାବରେ ପଡ଼ିବାକୁ ହେଲା । ଶେଷରେ ବଡ଼ଖେମଣ୍ଡିରେ ଆଉ ରହିବା ତାଙ୍କ ପକ୍ଷରେ ଅସମ୍ଭବ ହୋଇ ଉଠିଲା ।

ଗଞ୍ଜାମରେ ଜଳନ୍ତ୍ରର ବୋଲି ଆଉ ଗୋଟିଏ ରାଜ୍ୟ ଥିଲା । ରାମଚନ୍ଦ୍ର ଜ୍ୟୋତିରାୟ ଏହାର ରାଜା । ତାଙ୍କର କେତେଗୁଡ଼ିଏ ଭଲ ଗୁଣ ଥିଲା । ସେ ଓଡ଼ିଆ ସାହିତ୍ୟର ଚର୍ଚ୍ଚା କରୁଥିଲେ ଏବଂ ସାହିତ୍ୟରସିକମାନଙ୍କୁ ବଡ଼ ଆଦର ଦେଖାଉଥିଲେ । ଅଧିକନ୍ତୁ ମଧ୍ୟ ବ୍ରାହ୍ମଣମାନଙ୍କଠାରେ ତାଙ୍କର ଭକ୍ତି ଥିଲା । ସେ କୁଳୀନ ବ୍ରାହ୍ମଣ-ମାନଙ୍କୁ କିଛି ଭୂମି ବୃତ୍ତି ଦେଇ ରାଜଧାନୀରେ ସ୍ଥାନ ଦେଉଥିଲେ । ହରିହର ଏହି ରାଜାଙ୍କର ଆଶ୍ରୟପ୍ରାର୍ଥୀ ହେବାରୁ ସେ ତାଙ୍କର ବଂଶ ଓ ନୈଷ୍ଠିକତାର ପରିଚୟ ପାଇ ତାଙ୍କୁ ଆଦରରେ ଜଳନ୍ତ୍ରରରେ ରଖାଇଲେ । ଏହାପରେ ହରିହର ବିଧବା ଭଉଣୀ, ସାନଭାଇ

ବଳଦେବ ଓ ଭ୍ରାତୃବଧୂ ରକ୍ମମଣିଙ୍କୁ ଘେନି ଜଳନ୍ତରରେ ବାସ କରିବାକୁ ଲାଗିଲେ । ଏହି ଜଳନ୍ତରରେ ହିଁ ବଳଦେବଙ୍କ କବିତ୍ୱର ପ୍ରଥମ ସ୍ଫୁରଣ ଦେଖା ଦେଇଥିଲା ।

## —କବିସୂର୍ଯ୍ୟ ଉପାଧି—

ସେତେବେଳକୁ ବଳଦେବ ଯୌବନରେ ଉପସ୍ଥିତ । ସେ ସମୟ ସମୟରେ କବିତା ରଚନା କରି ବନ୍ଧୁମାନଙ୍କୁ ଶୁଣାଉଥିଲେ । ବଳଦେବ ଭଲ କବିତା ଲେଖିପାରନ୍ତି, ଏ କଥା କ୍ରମେ ରାଜା ରାମଚନ୍ଦ୍ର ଛୋଟରାୟ ଶୁଣିପାରି ପ୍ରତ୍ୟହ ରାଜସଭାରେ କାବ୍ୟାଲୋଚନା କରିବାକୁ ତାଙ୍କୁ ଅନୁରୋଧ କଲେ । ବଳଦେବ ରାଜସଭାରେ କେତେବେଳେ ସଂସ୍କୃତ କାବ୍ୟର ଗୋଟିଏ ଅଂଶ ଆବୃତ୍ତି କରି ସଭାସଦ୍‌ମାନଙ୍କୁ ତାହାର ଅର୍ଥ ବୁଝାଉଥିଲେ, କେତେବେଳେ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟର ଆଲୋଚନା କରୁଥିଲେ, କେତେବେଳେ ଅବା ସ୍ୱରଚିତ ଗୋଟିଏ ଦୁଇଟି ସଙ୍ଗୀତ ବୋଲି ଶ୍ରୋତାମାନଙ୍କୁ ମୁଗ୍ଧ କରୁଥିଲେ ।

ବଳଦେବ ନିଜର ପାଣ୍ଡିତ୍ୟ ଓ ମଧୁର କଣ୍ଠ ଯୋଗୁ ଅଳ୍ପକେ ସଭାସଦ୍ ତଥା ରାଜାଙ୍କର ପ୍ରଶଂସାଭାଜନ ହେଲେ । ଦିନକୁ ଦିନ ରାଜାଙ୍କର ତାଙ୍କ ପ୍ରତି ଅନୁଗ୍ରହ ବୃଦ୍ଧି ପାଇବାକୁ ଲାଗିଲା । ବଳଦେବ ଅନେକ କବିତା ରାଜା ରାମଚନ୍ଦ୍ର ଛୋଟରାୟଙ୍କ ନାମରେ ଭଣିତ କରି ରଚନା କରିଥିଲେ । ସେ ରାଜସଭାରେ ଶ୍ରେଷ୍ଠ ଆସନ ଲାଭ କଲେ । ପରିଶେଷରେ ବଳଦେବଙ୍କୁ ସମ୍ମାନ ଦେଖାଇବା ପାଇଁ ରାଜା ଗୋଟିଏ ପ୍ରକାଶ୍ୟ ଦରବାରରେ ତାଙ୍କ ମୁଣ୍ଡରେ ପାଟଶାଢ଼ୀ ବାନ୍ଧିଦେଇ 'କବିସୂର୍ଯ୍ୟ' ଉପାଧି ଦେଲେ । ଏହି 'କବିସୂର୍ଯ୍ୟ' ଉପାଧିଦ୍ୱାରା ସେ ସମଗ୍ର ଉତ୍କଳରେ ପରିଚିତ ହୋଇଅଛନ୍ତି ।

ଜଳନ୍ତର ରାଜସଭାରେ ଅନେକ ଉତ୍କଳୀୟ ଓ ଅନ୍ଧ୍ର ପଣ୍ଡିତ ଥିଲେ । ସେମାନଙ୍କ ମଧ୍ୟରେ ବଳଦେବଙ୍କର ଆସନ ଉଚ୍ଚ ଥିଲା । ତାଙ୍କ ରଚିତ ଓଡ଼ିଆ ଓ ସଂସ୍କୃତ କବିତାଗୁଡ଼ିକ ପଣ୍ଡିତମାନଙ୍କ ମଧ୍ୟରେ ଆଲୋଚିତ ଓ ପ୍ରଶଂସିତ ହେଉଥିଲା ।

## —ଚନ୍ଦ୍ରକଳା—

ରାଜା ରାମଚନ୍ଦ୍ରଙ୍କ ଅନ୍ତଃପୁରରେ ଗୋଟିଏ ନିରାଶ୍ରୟା ପିତୃ-ମାତୃହୀନା କରଣ ବାଳିକା ରାଜକନ୍ୟାରୂପେ ପ୍ରତିପାଳିତା ହେଉଥିଲା । କନ୍ୟାଟି ଅପୂର୍ବସୁନ୍ଦରୀ । ଏହି କନ୍ୟାଟିର ନାମ ଚନ୍ଦ୍ରକଳା । ଦିନେ ରାଜା କବିସୂର୍ଯ୍ୟଙ୍କୁ କହିଲେ, "ଆପଣ ଜଣେ ବଡ଼ କବି । ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀ କାବ୍ୟ ଲେଖି ଅମର ହୋଇଛନ୍ତି । ଆପଣ ଏହି ଚନ୍ଦ୍ରକଳାକୁ ନେଇ 'ଚନ୍ଦ୍ରକଳା' ବୋଲି ଖଣ୍ଡିଏ କାବ୍ୟ ରଚନା କରନ୍ତୁ ।" ବଳଦେବ ରାଜାଙ୍କ ଅନୁରୋଧ ରକ୍ଷା କରି 'ଚନ୍ଦ୍ରକଳା' କାବ୍ୟ ଆରମ୍ଭ କଲେ ! ଭଞ୍ଜକବି ଯେପରି ଲାବଣ୍ୟବତୀର ବର୍ଣ୍ଣନା କରିଅଛନ୍ତି, କବିସୂର୍ଯ୍ୟ ମଧ୍ୟ ଚନ୍ଦ୍ରକଳାର ପ୍ରସଙ୍ଗ ସେହିପରି ବର୍ଣ୍ଣନା କରି ଏକୋଇଶଟି ଛାନ୍ଦ ଲେଖିଗଲେ । ଏହି ସମୟରେ ଚନ୍ଦ୍ରକଳା ହଠାତ୍ ବସନ୍ତରୋଗରେ ପଡ଼ି ପ୍ରାଣତ୍ୟାଗ କରିବାରୁ କବିଙ୍କର ଚନ୍ଦ୍ରକଳା ଲେଖା ସେତିକିରେ ବନ୍ଦ ହୋଇଗଲା । ରାଜା ରାଣୀ ପ୍ରଭୃତି ଏହି ପାଳିତା କନ୍ୟାର ବିୟୋଗରେ ଦୁଃଖାଭିଭୂତ ହୋଇ ପଡ଼ିଲେ; ତେଣୁ ରାଜା 'ଚନ୍ଦ୍ରକଳା' କାବ୍ୟକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଆଉ କବିସୂର୍ଯ୍ୟଙ୍କୁ ଅନୁରୋଧ କଲେ ନାହିଁ । ଫଳତଃ 'ଚନ୍ଦ୍ରକଳା' ଚିରଦିନ ପାଇଁ ଉତ୍କଳସାହିତ୍ୟରେ ଅପୂର୍ଣ୍ଣ ହୋଇ ରହିଗଲା ।

## —ଦେବାନୀ—

ବଳଦେବ କେବଳ ପଣ୍ଡିତ, ଭକ୍ତ ଓ ସୁଗାୟକ ନ ଥିଲେ, ତାଙ୍କର ଲୌକିକ ଜ୍ଞାନ ଓ ବିଷୟର ଶକ୍ତି ମଧ୍ୟ ଉଚ୍ଚ ଥିଲା । ତେଣୁ ରାଜା ରୂପଚନ୍ଦ୍ର ବଳଦେବଙ୍କୁ ଦେବାନ କାର୍ଯ୍ୟରେ ନିଯୁକ୍ତ କରି ରାଜ୍ୟର ପ୍ରାୟ ସମସ୍ତ ଭାର ତାଙ୍କ ଉପରେ ନ୍ୟସ୍ତ କରିଥିଲେ । ବଳଦେବ ରାଜକାର୍ଯ୍ୟ ସାରି ଅବସର ସମୟରେ ରାଜାଙ୍କ ଚିତ୍ତବିନୋଦନ ନିମିତ୍ତ ସରସ ସଙ୍ଗୀତ, ଚଉପଦୀ ପ୍ରଭୃତି ରଚନା କରି ଶୁଣାଉଥିଲେ । ଏହି କବିତାଗୁଡ଼ିକ ଅତ୍ୟନ୍ତ ହୃଦୟଗ୍ରାହୀ ଏବଂ ଉତ୍କଳସାହିତ୍ୟରେ ସ୍ଥାୟୀ ଆସନ ଲାଭ କରିବାର ଯୋଗ୍ୟ ।

ଦେବାନ ଥାଇ ବଳଦେବ ଅତ୍ୟନ୍ତ ବିଶ୍ୱସ୍ତଭାବରେ ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ପ୍ରଜାମାନଙ୍କର ମଙ୍ଗଳସାଧନ ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ଜଳସେଚନ ଉଦ୍ଦେଶ୍ୟରେ ସେ ରାଜ୍ୟମଧ୍ୟରେ ଅନେକଗୁଡ଼ିଏ ବୃହତ୍ ପୁଷ୍କରିଣୀ ଖୋଳାଇଲେ ଏବଂ ରାଜ୍ୟର ଦେବମନ୍ଦିରମାନଙ୍କର ସୁପରିଚାଳନାର ବ୍ୟବସ୍ଥା କଲେ । ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ବୃତ୍ତିର ଯେପରି ସଦ୍‌ବ୍ୟବହାର ହୁଏ, ସେଥିପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା ।

ଉତ୍କଳୀୟ ସଂସ୍କୃତିକୁ ଅକ୍ଷୁଣ୍ଣ ରଖିବା ଓ ସମାଜର ଅହିତକର କ୍ରିୟାକଳାପକୁ ନିରୋଧ କରିବା ଉଦ୍ଦେଶ୍ୟରେ ସେ ଗୋଟିଏ ସଭା ସ୍ଥାପନ କରିଥିଲେ । ସ୍ୱୟଂ ରାଜା ତାହାର ସଭାପତି ଥିଲେ । ସେହି ସଭାରେ ବିଶିଷ୍ଟ ପଣ୍ଡିତମାନେ ସ୍ଥାନ ପାଇଥିଲେ । ଅନେକ ସାମାଜିକ ଓ ରାଜନୈତିକ ସମସ୍ୟା ଉକ୍ତ ସଭାଦ୍ୱାରା ସ୍ଥିରିକ

ଭାବରେ ସମାଦୃତ ହୋଇ ଯାଉଥିଲା । ଏହିରୂପେ ବଳଦେବ ପ୍ରଜାମାନଙ୍କର ବୈଷୟିକ ତଥା ନୈତିକ ଉନ୍ନତି ପ୍ରତି ସତତ ଯତ୍ନବାନ୍ ଥିଲେ ।

ପ୍ରତିଭା ଲୁଚି ରହିପାରେ ନାହିଁ । କଳନ୍ତରର ନିକଟବର୍ତ୍ତୀ ମଞ୍ଜୁଷା ରାଜ୍ୟର ରାଜା କବିସୂର୍ଯ୍ୟଙ୍କର କବିତ୍ୱ ଓ ରାଜ୍ୟଶାସନାଦି କୃତିତ୍ୱ ବିଷୟ ଶୁଣି ତାଙ୍କ ସହିତ ପରିଚିତ ହେବାର ଇଚ୍ଛା ରଖିଥିଲେ । ସେତେବେଳକୁ ଏହି ଦୁଇ ରାଜ୍ୟମଧ୍ୟରେ ବହୁକାଳ-ବ୍ୟାପୀ ଶତ୍ରୁତା ରହିଥିଲା । ଏହି ଶତ୍ରୁତା ଫଳରେ ଅନେକ ସମୟରେ ଉଭୟ ରାଜ୍ୟର ନିରୀହ ପ୍ରଜାମାନେ କଷ୍ଟ ଭୋଗୁଥିଲେ । ବଳଦେବ ଦେଖିଲେ, ଏହି କଳହ ଦୂରୀଭୂତ ନ ହେଲେ କୌଣସି ରାଜ୍ୟର ମଙ୍ଗଳ ହେବ ନାହିଁ । ତେଣୁ ସେ ମଞ୍ଜୁଷା ରାଜ୍ୟକୁ ଗଲେ । ମଞ୍ଜୁଷାର ରାଜା ବଳଦେବଙ୍କ ସହିତ କଥୋପକଥନ କରି ତାଙ୍କର ପାଣ୍ଡିତ୍ୟ ଓ ଉଦାରତା ପ୍ରଭୃତି ଗୁଣରେ ମୁଗ୍ଧ ହୋଇଗଲେ । ସେ ବଳଦେବଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ । କବିସୂର୍ଯ୍ୟଙ୍କ ଯତ୍ନରେ କଳନ୍ତର ଓ ମଞ୍ଜୁଷା ରାଜ୍ୟମଧ୍ୟରେ ଶତ୍ରୁତା ଦୂର ହୋଇ ବନ୍ଧୁତ୍ୱ ସ୍ଥାପିତ ହେଲା । ବଳଦେବ କଳନ୍ତର ରାଜ୍ୟର ବୃତ୍ତିଭୋଗୀ ଥିଲେହେଁ ନିକଟବର୍ତ୍ତୀ ରାଜ୍ୟ-ମାନଙ୍କର ରାଜାମାନେ ତାଙ୍କୁ ସାଦର ନିମନ୍ତ୍ରଣ କରି ସମ୍ମାନ ଦେଖାଉଥିଲେ ଏବଂ ବଳଦେବ ମଧ୍ୟ ସେହି ସେହି ରାଜ୍ୟର ଉନ୍ନତି ଦିଗରେ ପରାମର୍ଶ ଦେବାକୁ କୁଣ୍ଠିତ ହେଉ ନ ଥିଲେ ।

## —ଆଠଗଡ଼ ଯାତ୍ରା—

ଆଠଗଡ଼ରେ ଶ୍ରୀ ଗାଲ୍‌ଟେକେଶ୍ୱର ହରିଚନ୍ଦନ ନାମରେ ଜଣେ ଯୁବକ ରାଜା ଥିଲେ । ଅନ୍ୟାନ୍ୟ ରାଜାଙ୍କ ପରି ତାଙ୍କର ମଧ

ଗୋଟିଏ ପଣ୍ଡିତସଭା ଥିଲା ଓ ଅଗନ୍ତୁକ ପଣ୍ଡିତମାନେ ରାଜାଙ୍କର ସମାଦର ଲାଭ କରୁଥିଲେ । ସେତେବେଳକୁ କବିସୂର୍ଯ୍ୟଙ୍କର ଖ୍ୟାତି ସମଗ୍ର ଦକ୍ଷିଣ ଓଡ଼ିଶାରେ ବ୍ୟାପିଥିଲା କହିଲେ ଚଳେ ।

ଥରେ ଅଠଗଡ଼ ରାଜସଭାର ଜଣେ ପ୍ରଧାନ ପଣ୍ଡିତ ଜଗନ୍ନାଥ ବୁଲି ଆସିଥିଲେ । ସେ ଜଗନ୍ନାଥରେ କବିସୂର୍ଯ୍ୟଙ୍କର ଅତିଥି ରୂପେ କେତେ ଦିନ ରହି ତାଙ୍କର ଗମ୍ଭୀର ପାଣ୍ଡିତ୍ୟ, ଅତିଥେୟତା ଓ ଉଦାରତା ପ୍ରଭୃତି ଗୁଣର ପ୍ରତ୍ୟକ୍ଷ ପ୍ରମାଣ ପାଇ ଅଠଗଡ଼ ଫେରିଗଲେ ଏବଂ ସେଠାରେ ରାଜା ତଥା ସଭାସଦଙ୍କ ନିକଟରେ କବିସୂର୍ଯ୍ୟଙ୍କର ସୁଖ୍ୟାତି ପ୍ରକାଶ କଲେ । କବିସୂର୍ଯ୍ୟଙ୍କୁ ଦର୍ଶନ କରିବା ଓ ତାଙ୍କ ମୁଖରୁ କାବ୍ୟ କବିତା ଶୁଣିବା ପାଇଁ ରାଜାଙ୍କର ହୃଦୟ ବ୍ୟାକୁଳ ହେଲା । ତେଣୁ ଅଠଗଡ଼ ଆସିବା ପାଇଁ କବିସୂର୍ଯ୍ୟଙ୍କୁ ଅନୁରୋଧ କରି ରାଜା ଏକ ପତ୍ର ଦେଲେ । କିନ୍ତୁ ରାଜକାର୍ଯ୍ୟର ଗୁରୁତ୍ୱ ଦୃଷ୍ଟିରୁ କବିସୂର୍ଯ୍ୟ ସେତେବେଳେ ଅଠଗଡ଼ ଯିବାପାଇଁ ନିଜର ଅସାମର୍ଥ୍ୟ ଜଣାଇଲେ । ବାଲୁକେଶ୍ୱର ପୁନରାୟ ପତ୍ର ଲେଖି କବିଙ୍କର ଅଠଗଡ଼ ଯିବା ନିମନ୍ତେ ସବାରି ଓ ବାହକ ପଠାଇଲେ । ଏପରି ଅବସ୍ଥାରେ କବିସୂର୍ଯ୍ୟ ଅଠଗଡ଼ ରାଜାଙ୍କ ଅନୁରୋଧକୁ ଉପେକ୍ଷା କରିପାରିଲେ ନାହିଁ । ରାମଚନ୍ଦ୍ର ଜ୍ୟେଷ୍ଠରାୟ ନିତାନ୍ତ ଅନିଚ୍ଛା ସତ୍ତ୍ୱେ କବିସୂର୍ଯ୍ୟଙ୍କୁ ଛଅ ମାସର ଛୁଟି ଦେଇ ଅଠଗଡ଼ ଯିବାକୁ ଅନୁମତି ଦେଲେ ।

ରାଜା ବାଲୁକେଶ୍ୱର ଅତ୍ୟନ୍ତ ଆଦର ଓ ସମ୍ମାନ ସହକାରେ କବିସୂର୍ଯ୍ୟଙ୍କୁ ସମ୍ବର୍ଦ୍ଧନା କଲେ ଏବଂ ନିଜପଣ୍ଡିତସଭାରେ ତାଙ୍କୁ ଉଚ୍ଚ ଆସନ ଦେଲେ । ରାଜା ନିଜେ ସଂସ୍କୃତଜ୍ଞ ଓ ସଙ୍ଗୀତନିପୁଣ ଥିଲେ । କବିଙ୍କୁ ପାଇ ତାଙ୍କର ସଂଗୀତ ଓ ସାହିତ୍ୟଚର୍ଚ୍ଚା ଆହୁରି ବୃଦ୍ଧି ପାଇଲା । ରାଜା କୃଷ୍ଣଭକ୍ତି ପରାୟଣ ଥିବାରୁ କବିସୂର୍ଯ୍ୟ ରାଧାକୃଷ୍ଣ-

ପ୍ରେମ ସମ୍ବଳିତ କବିତା ରଚନା କରି ରାଜାଙ୍କୁ ଉପହାର ଦେଉଥିଲେ । ଏହି କବିତାଗୁଡ଼ିକ ରାଜାଙ୍କ ନାମରେ ଲିଖିତ ହୋଇଥିଲା । ଯେଉଁ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଦ୍ୱାରା କବି ଉତ୍କଳର ଗ୍ରାମେ ଗ୍ରାମେ ପରିଚିତ, ତାହା ସେ ଏହି ସମୟରେ ରଚନା କରିଥିଲେ ।

ସେତେବେଳକୁ କବିଙ୍କର ପ୍ରଥମା କନ୍ୟାଟି ବିବାହଯୋଗ୍ୟା ହୋଇଥିବାରୁ କବିସୂର୍ଯ୍ୟ ଉପଯୁକ୍ତ ବରପାତ୍ର ଅନୁସନ୍ଧାନ ପାଇଁ ପୁରୀ ବାହାରିଲେ । ରାଜା ମହୋଦୟ ତାଙ୍କର ପୁରୀ ଯାତ୍ରାର ସୁବ୍ୟବସ୍ଥା କରିଦେଲେ ଏବଂ ଜଳନ୍ତର ତ୍ୟାଗ କରି ପରିବାର ସହ ଆଠଗଡ଼ରେ ବାସ କରିବାକୁ ଅନୁରୋଧ କଲେ ।

## —ପୁରୀରେ ସମ୍ମାନ ଲାଭ—

ବଳଦେବ ପୁରୀରେ ଉପସ୍ଥିତ ହୋଇ ଜଗନ୍ନାଥ ମହାସୁଆର ନାମକ ଜଣେ ସେବକଙ୍କ ଘରେ ରହିଲେ । କବିଙ୍କର ଶ୍ୱଶୁର ରାମକୃଷ୍ଣ ମିଶ୍ର ଉକ୍ତ ସୁଆରଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ । ତେଣୁ ବଳଦେବଙ୍କର କୌଣସି ଅସୁବିଧା ରହିଲା ନାହିଁ । ପୁରୀରେ ପତିତପାବନ ଜଗନ୍ନାଥଙ୍କ ତଳକୁ ପୁରୀ ରାଜାଙ୍କର ଆସନ । ସେତେବେଳକୁ ଓଡ଼ିଶା ଇଂରେଜ ଶାସନର ଅଧୀନ ହୋଇଥିଲା । ଉତ୍କଳ ସମ୍ରାଟଙ୍କର 'ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପୀ, କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି' ସେହି ରାଜ୍ୟ ଆଉ ନ ଥିଲା । ତଥାପି ସେ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମାରୂପେ ସମଗ୍ର ହିନ୍ଦୁରାଜ୍ୟର ନମସ୍ୟ ଥିଲେ । ଓଡ଼ିଶାର କରଦ ରାଜ୍ୟସବୁ ଇଂରେଜମାନଙ୍କ ସହିତ ସନ୍ଧି-ସୂତ୍ରରେ ଆବଦ୍ଧ ହୋଇଥିଲେହେଁ ପୁରୀରାଜାଙ୍କ ପ୍ରତି ସେମାନଙ୍କର

ଅନୁଗତ୍ୟ ଲୋପ ପାଇ ନ ଥିଲା । ପୁରୀ ରାଜାଙ୍କର ସମସ୍ତ ରାଜ୍ୟ ଚାଲି ଯାଇଥିଲେହେଁ ସେ 'ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟକଲବର୍ଗେଶ୍ୱର' ବୋଲି ପରିଚିତ ଥିଲେ । ପୁରୀ ରାଜା ମୁକୁନ୍ଦ ଦେବ ପୂର୍ବ ବୈଭବ ହରାଇଥିଲେହେଁ ପୂର୍ବ ଗୌରବ ଓ ରାଜକୀୟ ବିଧି ଅକ୍ଷୁଣ୍ଣ ରଖିଥିଲେ । ରାଜା ନିଜେ ବିବିଧ ଶାସ୍ତ୍ର ଅନୁଶୀଳନ କରି ପାଣ୍ଡିତ୍ୟ ଅର୍ଜନ କରିଥିଲେ ଏବଂ ସଂସ୍କୃତାଭିଜ୍ଞ ପଣ୍ଡିତମାନଙ୍କୁ ସ୍ୱକୀୟ ସଭାରେ ସ୍ଥାନ ଦେଇ ଉତ୍ସାହିତ କରି ବିଦ୍ୟାଲୋଚନାରେ ପୁରୀର ମହତ୍ତ୍ୱ ରକ୍ଷା କରିଥିଲେ । ପୁରୀ ରାଜାଙ୍କର ପଣ୍ଡିତ ସଭା ଅନେକ ଅସାଧାରଣ ମନୀଷୀଙ୍କଦ୍ୱାରା ବିମଣ୍ଡିତ ହୋଇଥିବାରୁ ସମଗ୍ର ଭାରତରେ ଏହାର ସୁନାମ ଥିଲା । ଅନ୍ୟାନ୍ୟ ରାଜସଭାର ପଣ୍ଡିତମାନେ ସ୍ୱୀୟ ଜ୍ଞାନର ପରାକାଷ୍ଠା ପ୍ରଦର୍ଶନ ନିମିତ୍ତ ସମୟେ ସମୟେ ଏଠାକୁ ଆସୁଥିଲେ । ଯେଉଁ ପଣ୍ଡିତ ପୁରୀ ରାଜାଙ୍କର ପ୍ରଶଂସା ଲାଭ କରି ପାରୁଥିଲେ ସେ ନିଜକୁ କୃତାର୍ଥ ମନେ କରୁଥିଲେ । ବାଳଦେବ ଜଳନ୍ତର, ଆଠଗଡ଼, ବଡ଼ଖେମଣ୍ଡି ପ୍ରଭୃତି ରାଜ୍ୟରେ ପ୍ରତିଷ୍ଠା ଅର୍ଜନ କରି ସାରିଥିଲେ । ପୁରୀ ରାଜଦରବାରେ ସମ୍ମାନିତ ହେବା ତାଙ୍କର ପ୍ରଧାନ କାମନା ହେଲା ଓ ସେ ଏଥିପାଇଁ ସୁଯୋଗ ଅନ୍ୱେଷଣ କରିବାକୁ ଲାଗିଲେ ।

ମୁକୁନ୍ଦ ଦେବଙ୍କ ସଭାରେ ଅସାଧାରଣ ସ୍ମୃତି-ଶକ୍ତି-ସଂପନ୍ନ ଦୁଇଜଣ ପଣ୍ଡିତ ଥିଲେ । ସେମାନେ ଯେକୌଣସି କବିତା ଥରେମାତ୍ର ଶ୍ରବଣ କଲେ ତାହାକୁ ଆବୃତ୍ତି କରି ପାରୁଥିଲେ । ତେଣୁ କୌଣସି ଆଗନ୍ତୁକ କବି ନୂତନ ଶ୍ଳୋକ ରଚନା କରି ରାଜାଙ୍କୁ ଶୁଣାଇବା ମାତ୍ରେ ସେମାନେ ତାହାକୁ ଆବୃତ୍ତି କରି ଶ୍ଳୋକଟି ପୁରାତନ ବୋଲି ପ୍ରତିପନ୍ନ କରିଦିଅନ୍ତି । ବାଳଦେବ ରାଜାନୁଗ୍ରହ ପାଇବା ଆଶାରେ

କେତେକ ଶ୍ଳୋକ ରଚନା କରି ମହାସୁଆରଙ୍କଦ୍ୱାରା ରାଜାଙ୍କ ନିକଟକୁ ପ୍ରେରଣ କଲେ; କିନ୍ତୁ ଜଣେ ପଣ୍ଡିତଦ୍ୱୟ ସେଗୁଡ଼ିକୁ ପୂରାତନ ରଚନା ବୋଲି ପ୍ରମାଣ କରି ଦେଲେ ।

ପୁରୀରେ ଥିବା ସମୟରେ ବଳଦେବ ପ୍ରତ୍ୟହ ଜଗନ୍ନାଥଙ୍କ ମନ୍ଦିରକୁ ଯାଉଥିଲେ, ଓ ସ୍ୱରଚିତ ଓଡ଼ିଆ ସ୍ତବ ଗାନ କରି ଜଗନ୍ନାଥ ଦର୍ଶନ କରୁଥିଲେ । ସେଥିମଧ୍ୟରୁ ୪ଗୋଟିକର କେତେକାଂଶ ପ୍ରଥମରୁ ଦିଆ ଯାଇଅଛି ।

କ୍ରମେ କବିସୂର୍ଯ୍ୟଙ୍କର ଏହି ସ୍ତବଗୁଡ଼ିକ ଲୋକମୁଖରେ ପୁରୀ ସହରରେ ପ୍ରଚାର ପାଇଲା ଏବଂ ଅନେକେ ତାଙ୍କ ସହିତ ପରିଚିତ ହେବାକୁ ଚେଷ୍ଟା କଲେ । ଦିନକୁ ଦିନ କବିଙ୍କର ଖ୍ୟାତି ବଢ଼ିବାକୁ ଲାଗିଲା । ପରେ କବିସୂର୍ଯ୍ୟ ଗୋଟିଏ ଓଡ଼ିଆ କବିତା ରଚନା କରି ତାକୁ ରାଜା ମୁକୁନ୍ଦ ଦେବଙ୍କ ନାମରେ ଭଣିତ କରି ରାଜାଙ୍କ ନିକଟକୁ ପଠାଇଲେ । ରାଜା ନିଜେ ପଣ୍ଡିତ; ତେଣୁ ସେ ଏଥିରେ ଭାବର ଗମ୍ଭୀରତା, ଭାଷାର ମନୋହାରିତା ଓ ପାଣ୍ଡିତ୍ୟର ପ୍ରକର୍ଷ ଦେଖି କବିତାଟିକୁ ଖୁବ୍ ପ୍ରଶଂସା କଲେ । ଏହା ରାଜାଙ୍କ ସଭାରେ ଆଲୋଚିତ ହେଲା । ଈର୍ଷାପରାୟଣ ପଣ୍ଡିତମାନେ ମଧ୍ୟ କବିତାଟିର ପ୍ରଶଂସା କରିବାକୁ ବାଧ୍ୟ ହେଲେ । ତତ୍‌ପରଦିନ ଲକ୍ଷ୍ମୀଙ୍କ ମୋହନରେ ତାଙ୍କ ସହିତ ଦର୍ଶନ କରିବାକୁ ରାଜା କବିସୂର୍ଯ୍ୟଙ୍କ ନିକଟକୁ ସମ୍ବାଦ ଦେଇ ପଠାଇଲେ ।

## —ମନ୍ଦିରରେ ରାଜଦର୍ଶନ—

ଅନ୍ୟାନ୍ୟ ଦିନ ପରି ସେଦିନ ମଧ୍ୟ ରାଜା ମୁକୁନ୍ଦ ଦେବ ସ୍ନାନାଦି ପ୍ରାତଃକୃତ୍ୟ ସମାପନ କରି ମନ୍ଦିରରେ ଜଗନ୍ନାଥଙ୍କର

ମଙ୍ଗଳ ଅଳଭି ଦର୍ଶନ କରିବାକୁ ଗଲେ । ସଙ୍ଗରେ ପଣ୍ଡିତମାନେ ତାଙ୍କର ଅନୁଗମନ କଲେ । ଏଣେ ବଳଦେବ ଲକ୍ଷ୍ମୀଙ୍କ ମୋହନରେ ରାଜଦର୍ଶନ ଅପେକ୍ଷାରେ ଥାଆନ୍ତି । ରାଜା ସତ୍ୟନାରାୟଣ, ବଟ-ଗଣେଶ, ବିମଳା ପ୍ରଭୃତି ପାର୍ଶ୍ୱଦେବତାଙ୍କ ଦର୍ଶନ ସାରି ଲକ୍ଷ୍ମୀଙ୍କ ମନ୍ଦିର ଅଡ଼କୁ ଅଗ୍ରସର ହେଲେ । ସେଠାରେ ବଳଦେବଙ୍କର ବ୍ରହ୍ମତେଜୋଦୀପ୍ତ ମୁଖମଣ୍ଡଳ ଦେଖିବା ମାତ୍ରେ ରାଜା ତାହାଙ୍କ ଅଡ଼କୁ ଆକୃଷ୍ଟ ହୋଇ ପଡ଼ିଲେ । ଏଥିମଧ୍ୟରେ ମହାସୁଆର ରାଜାଙ୍କୁ ବଳଦେବଙ୍କର ପରିଚୟ ପ୍ରଦାନ କଲେ । ରାଜା କିଛିକାଳ ପର୍ଯ୍ୟନ୍ତ ବଳଦେବଙ୍କ ସଙ୍ଗେ କଥୋପକଥନ କରି ତାହାଙ୍କ ପାଣ୍ଡିତ୍ୟର ପରୀକ୍ଷା ନିମନ୍ତେ ଗୋଟିଏ ସମସ୍ୟା ପୂରଣ କରିବାକୁ କହିଲେ ଓ ଏଥି ନିମନ୍ତେ ଅଠ ଦିନ ସମୟ ଦେଲେ ।

ରାଜା ସ୍ୱୀୟ ପଣ୍ଡିତବର୍ଗ ଓ ବଳଦେବଙ୍କ ଗହଣରେ ଜଗନ୍ନାଥଙ୍କର ଅଳଭିଦର୍ଶନ ସାରି ରତ୍ନସିଂହାସନ ନିକଟରେ ବଳଦେବଙ୍କୁ ଦେଖି କହିଲେ, "ଆପଣ ଲକ୍ଷ୍ମୀ ଓ ବିଷ୍ଣୁଙ୍କର ମିଳନକୁ ଲକ୍ଷ୍ୟ କରି ଗୋଟିଏ କବିତା ବୋଲିପାରିବେ କି ?" ରାଜାଦେଶ ପାଇବା ମାତ୍ରେ ବଳଦେବ ସୁଲଳିତ କଣ୍ଠରେ ଗୋଟିଏ ଭକ୍ତିରସାତ୍ମକ କବିତା ଗାଇବାକୁ ଲାଗିଲେ ।

କବିତାଟି ପୁରୀର ମହାରାଜା ମୁକୁନ୍ଦ ଦେବଙ୍କ ନାମରେ ଭଣିତ ହୋଇଥିଲା ଏବଂ ରାଜାଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ବିଷୟକୁ ନେଇ ରଚିତ ହୋଇଥିଲା । ତେଣୁ କବିସୂର୍ଯ୍ୟ ଏହାକୁ ତତ୍‌କ୍ଷଣାତ୍ ମୁହୂର୍ତ୍ତେ ମୁହୂର୍ତ୍ତେ ରଚନା କରି ଗାଇଥିବା ନିଃସନ୍ଦେହ ।

ମହାରାଜା ନିସ୍ପନ୍ଦ ଭାବରେ ଦଣ୍ଡାୟମାନ ରହି ଏହି ପବିତ୍ର ଗୀତର ମାଧୁରୀ ଉପଭୋଗ କରିବାକୁ ଲାଗିଲେ । ତାଙ୍କ ଅନୁଚରମାନେ

ମଧ୍ୟ ବିସ୍ମୟରେ ବିହ୍ୱଳ ହୋଇଗଲେ । ଅନେକେ କାଗଜ କଲମ ଧରି ଅକ୍ଷର ଗଣି କବିତା ଲେଖନ୍ତି; କିନ୍ତୁ କେତେଜଣଙ୍କ ହୃଦୟ-କନ୍ଦରରୁ କବିତାର ଏପରି ସ୍ୱଚ୍ଛ ମନ୍ଦାକିନୀ ଧାରା ସ୍ୱତଃ ପ୍ରବାହିତ ହୁଏ ? କବିସୂର୍ଯ୍ୟ ଥିଲେ ଅଦ୍ଭୁତ ପ୍ରତିଭାଶାଳୀ କବି ।

ରାଜା ବଳଦେବଙ୍କର ଅଲୌକିକ କବିତ୍ୱ ଦେଖି ପରମ ସନ୍ତୋଷ ପ୍ରକାଶ କରି କବିଙ୍କୁ ଗୋଟିଏ ଉପାଧି ପ୍ରଦାନ କରିବାକୁ ଇଚ୍ଛା ପ୍ରକାଶ କଲେ । ତହୁଁ ବଳଦେବ ବିନୀତ ଭାବରେ ଉତ୍ତର ଦେଲେ, "ମହାରାଜ, ଜଳନ୍ତର ରାଜାଙ୍କଠାରୁ ମୁଁ ଯେଉଁ 'କବିସୂର୍ଯ୍ୟ' ପଦବୀ ପାଇଅଛି, ତାହାଦ୍ୱାରା ମୁଁ ଓଡ଼ିଶାରେ ସର୍ବତ୍ର ପରିଚିତ ହୋଇ ସାରିଛି । ଆପଣ ଯଦି କୃପା କରି ସେହି 'କବିସୂର୍ଯ୍ୟ' ଉପାଧିକୁ ନିଜର ବୋଲି ସ୍ୱୀକାର କରନ୍ତି ତେବେ କୃତାର୍ଥ ହେବି ।" ରାଜା ତତ୍‌କ୍ଷଣାତ୍ ଭଣ୍ଡାରରୁ ପାଟଶାଢ଼ୀ ଅଣାଇ ବଳଦେବଙ୍କ ମୁଣ୍ଡରେ ସ୍ୱହସ୍ତରେ ବାନ୍ଧିଦେଇ କବିସୂର୍ଯ୍ୟ ଉପାଧିକୁ ସ୍ୱୀକାର କଲେ । ରାଜା ଦେବଦର୍ଶନ ଶେଷରେ ପ୍ରାସାଦକୁ ଫେରିବା ଉଦ୍ଦେଶ୍ୟରେ ସିଂହ-ଦ୍ୱାରର ନିକଟବର୍ତ୍ତୀ ହେଲେ । ଏହି ସମୟରେ ବଳଦେବ ରାଜା ପଚାରିଥିବା ସମସ୍ୟାଟି ପୂରଣ କରି ତାହାଙ୍କୁ ଜଣାଇଲେ । ରାଜା ଯେଉଁ ସମସ୍ୟାଟି ପଚାରିଥିଲେ, ତାହା ଆଠ ଦିନରେ କାହିଁକି ଆଠ ମାସରେ ମଧ୍ୟ ପୂରଣ କରିବା ଇତର ପଣ୍ଡିତମାନଙ୍କ ପକ୍ଷରେ ଅସମ୍ଭବ ହୋଇଥାନ୍ତା; କିନ୍ତୁ ବଳଦେବ ଅଳ୍ପ କେତେ ଘଣ୍ଟା ମଧ୍ୟରେ ତାହାର ଉପଯୁକ୍ତ ସମାଧାନ କରି ପାରିଥିବାର ଦେଖି ରାଜାଙ୍କର ବିସ୍ମୟ ବହୁଗୁଣରେ ବୃଦ୍ଧି ପାଇଲା ଏବଂ ସେ ମନେ ମନେ କବିସୂର୍ଯ୍ୟଙ୍କ ପ୍ରତିଭାକୁ ଶତ ମୁଖରେ ପ୍ରଶଂସା କରିବାକୁ ଲାଗିଲେ ।

ଜଗତରେ ଈର୍ଷାଳୁ ଲୋକଙ୍କର ଅଭାବ ନାହିଁ । ରାଜାଙ୍କର ଅନୁଗତ ପଣ୍ଡିତମାନଙ୍କ ମଧ୍ୟରୁ ଅନେକେ ବଳଦେବଙ୍କ ପ୍ରତି ରାଜାଙ୍କର ଆଦର ଦେଖି ମନେ ମନେ ଈର୍ଷାରେ ଜଳିବାକୁ ଲାଗିଲେ । ପର ଦିନ ରାଜସଭାରେ ସେମାନେ ବଳଦେବଙ୍କ କବିତା ଓ ସମସ୍ୟା ପୂରଣ ପ୍ରବୃତ୍ତିକୁ ସାମାନ୍ୟ ବୋଲି ପ୍ରତିପନ୍ନ କରିବାକୁ ଚେଷ୍ଟା କଲେ । କିନ୍ତୁ ରାଜା ଚତୁର ଗ୍ରାହକ । ସେ ଜାଣି ପାରିଲେ ଯେ ପଣ୍ଡିତମାନଙ୍କର ଅଭିମତ ଈର୍ଷାପ୍ରଣୋଦିତ । ତେଣୁ ସେ କବିସୂର୍ଯ୍ୟଙ୍କୁ ସଭାକୁ ଡକାଇ ପଠାଇଲେ ।

ଯଥାସମୟରେ କବିସୂର୍ଯ୍ୟ ରାଜସଭାରେ ଉପସ୍ଥିତ ହୁଅନ୍ତେ ରାଜା ତାଙ୍କୁ ପ୍ରଣାମ କଲେ ଓ କବିସୂର୍ଯ୍ୟ ଆଶୀର୍ବାଦ ଶ୍ଳୋକ ଆବୃତ୍ତି କରିବାକୁ ଲାଗିଲେ । ଏହି ଶ୍ଳୋକଗୁଡ଼ିକର ରଚନାକୌଶଳ ଓ ଅର୍ଥଗୌରବ ପଣ୍ଡିତମାନଙ୍କୁ ଚମତ୍କୃତ କରିଦେଲା । ରାଜା କବିସୂର୍ଯ୍ୟଙ୍କୁ ନିଜର ଆସନ ନିକଟରେ ଆସନ ଦେଲେ । ତତ୍ପରେ ଶାସ୍ତ୍ରାଲୋଚନା ଆରମ୍ଭ ହେଲା । ପଣ୍ଡିତମାନେ କବିସୂର୍ଯ୍ୟଙ୍କୁ ବିବିଧ ଜଟିଳ ପ୍ରଶ୍ନ ପଚାରି ଅପଦସ୍ଥ କରିବାର ପ୍ରୟାସ କଲେ; କିନ୍ତୁ କବିସୂର୍ଯ୍ୟ ସେହି ପ୍ରଶ୍ନମାନଙ୍କର ଏପରି ସୁନ୍ଦର ସମାଧାନ କରି-ଦେଲେ ଯେ ପଣ୍ଡିତମାନେ ଆଉ କିଛି ପ୍ରଶ୍ନ କରିବାକୁ ସାହସ କଲେ ନାହିଁ । ପ୍ରତିଦିନ ରାଜସଭାକୁ ଆସିବା ପାଇଁ ରାଜା କବିସୂର୍ଯ୍ୟଙ୍କୁ ଅନୁରୋଧ କଲେ । ରାଜାଙ୍କ ଅନୁରୋଧ ରକ୍ଷା କରି କବିସୂର୍ଯ୍ୟ ପ୍ରତ୍ୟହ ସଭାକୁ ଆସୁଥିଲେ ଏବଂ ସ୍ୱରଚିତ ସଂସ୍କୃତ ଶ୍ଳୋକ ବା ଓଡ଼ିଆ କବିତା ଆବୃତ୍ତି କରି ସେସବୁର ବ୍ୟାଖ୍ୟା କରୁଥିଲେ । ରାଜା ତଥା ତାଙ୍କର ପଣ୍ଡିତମାନେ ତାହା ଶୁଣି ଅତ୍ୟନ୍ତ ଆପ୍ୟାୟିତ ହେଉଥିଲେ । କବିସୂର୍ଯ୍ୟ ଅନ୍ୟ ପଣ୍ଡିତମାନଙ୍କ ହୀନ ପ୍ରତିପନ୍ନ

କରି ନିଜର ପ୍ରତିଷ୍ଠା ଅର୍ଜିବାକୁ ଆଦୌ ଚେଷ୍ଟା କରୁ ନ ଥିଲେ । ତେଣୁ ଯେଉଁ ପଣ୍ଡିତମାନେ ତାଙ୍କୁ ପ୍ରଥମେ ରାଜାଙ୍କଠାରୁ ଦୂରରେ ରଖିବାକୁ ଚେଷ୍ଟା କରୁଥିଲେ ସେମାନେ ମଧ୍ୟ ତାଙ୍କର ବନ୍ଧୁ ହୋଇଗଲେ ଓ ସର୍ବତ୍ର ତାଙ୍କର ପ୍ରଶଂସା ଗାଇବାକୁ ଲାଗିଲେ । ଏହି ସମୟରେ କବି ଯେଉଁ ସବୁ କବିତା ରଚନା କରିଥିଲେ ସେଥି-ମଧ୍ୟରୁ ଅଧିକାଂଶ ପୁରୀର ରାଜା ମୁକୁନ୍ଦ ଦେବଙ୍କ ନାମରେ ଭଣିତ କରାଯାଇଥିଲା ।

## —ସନନ୍ଦ ପ୍ରାପ୍ତି—

ବଳଦେବଙ୍କର ପୂର୍ବପୁରୁଷ ପୁରୀ ଜିଲାର ମଣିପୁରଆ ରଥ ନାମରେ ପରିଚିତ । ସେମାନେ ରାଜଦତ୍ତ ବୃତ୍ତି ଭୋଗ କରି ମଣିପୁର ଶାସନରେ ବାସ କରୁଥିଲେ । ଏହି ଦାନ ବୃତ୍ତି କ୍ରମେ ହସ୍ତାନ୍ତରିତ ହୋଇଯିବାରୁ ସେମାନେ ମଣିପୁର ତ୍ୟାଗ କରି ଗଞ୍ଜାମ ଅଞ୍ଚଳକୁ ଯାଇ ବସବାସ କରି ଯାଇଥିଲେ । ସେମାନଙ୍କ ମଧ୍ୟରୁ ବଳଦେବଙ୍କ ପିତା ଉଜ୍ଜ୍ୱଳ ରଥେ ବଡ଼ଖେମଣ୍ଡିରେ ବାସ କରୁଥିଲେ ଓ ସେହିଠାରେ ବଳଦେବଙ୍କର ଜନ୍ମ ହୋଇଥିଲା । ରାଜଦତ୍ତ ବୃତ୍ତି ସଙ୍ଗେ ବଳଦେବଙ୍କର ପୂର୍ବପୁରୁଷ ପୁରୀ ରାଜାଙ୍କ ଦରବାର ତଥା ଜଗନ୍ନାଥଙ୍କ ମନ୍ଦିରରେ କେତେକ ସମ୍ମାନର ଅଧିକାରୀ ହୋଇଥିଲେ; କିନ୍ତୁ ପୁରୀ ଜିଲା ତ୍ୟାଗ କରି ଅନ୍ୟାନ୍ୟ ସ୍ଥଳକୁ ଯିବା ପରେ ସେମାନେ ସେହିସବୁ ସମ୍ମାନରୁ ବଞ୍ଚିତ ହୋଇଗଲେ ।

ବଳଦେବ ପୁରୀରେ ତାଙ୍କର ପୂର୍ବ କୌଳିକ ଅଧିକାର ପୁନରାୟ ପାଇବା ପାଇଁ ରାଜାଙ୍କ ନିକଟରେ ପ୍ରାର୍ଥୀ ହେଲେ । କବିସୂର୍ଯ୍ୟଙ୍କର ପୂର୍ବପୁରୁଷ କିପରି ଭାବରେ ପୁରୀ ରାଜାଙ୍କଠାରୁ

କ କ ସୁବିଧା ପାଉଥିଲେ ସେସବୁର ବିଗ୍ରହ କରି ରାଜା ମୁକୁନ୍ଦ ଦେବ ବଳଦେବ ରଥଙ୍କୁ ଗୋଟିଏ ସନନ୍ଦଦ୍ୱାରା "କବିସୂର୍ଯ୍ୟ ଗ୍ରନ୍ଥଗୁରୁ ପଦ, ସୁନାବେଣ୍ଟ ଚାମର, ଯୋଡ଼ା ମଶାଲ, ଘୋଷଣା ପାଉଛି, ଯାଉଳି କବାଟ, ମକରମୁହାଁ ପାଲିକା ଓ ଚାଉଁରଦର ଅଡ଼େଣୀ ବାସ, ପୃଥକ୍ ନମସ୍କାର, ଖିଦମତ ପର ବୈଠକ ଘର ଛାଡ଼" ଅଧିକାର ଦେଲେ । ଅଧିକର ମଧ୍ୟ ସେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭଣ୍ଡାରରୁ "ସୁନାବେଣ୍ଟ ଚାମର ନେଇ ଚନ୍ଦନ ଅର୍ଗଳଠାରେ, ରଥ ଉପରେ, ରୂପ ଉପରେ, ଯାତ୍ରାଯାତ୍ରାମାନଙ୍କରେ ଚାମର ସେବା" କରିବାର ଅଧିକାର ପାଇଲେ । ଏହି ସନନ୍ଦଟି ମୁକୁନ୍ଦ ଦେବ ମହାରାଜାଙ୍କ ୨୩ ଅଙ୍କ ବିଛା ୧୫ ଦିନ ଦିଆଯାଇଥିଲା ।

୬

ସନନ୍ଦ ଲାଭ କରିବାରୁ ବଳଦେବଙ୍କର ମନସ୍କାମନା ସିଦ୍ଧ ହେଲା । ସେ ପୁରୀରେ କେତେକ ମାସ ଅତିବାହିତ କରି ରାଜାଙ୍କ ଠାରୁ ଏକ ସହସ୍ର ମୁଦ୍ରା, ରତ୍ନକୁଣ୍ଡଳ, ପାଟ ପ୍ରଭୃତି ଉପହାର ନେଇ ବିଦାୟ ନେଲେ । ରାଜା ତାଙ୍କର ଯିବା ନିମନ୍ତେ ସବାରି ଓ ବାହକର ବ୍ୟବସ୍ଥା କରିଦେଲେ ।

## —ଜଳନ୍ତର ବାହୁଡ଼ା—

ପ୍ରଥମେ କବିସୂର୍ଯ୍ୟ ପୁରୀଠାରୁ ଉସ୍ତାବରପଦା ଶାସନକୁ ଗଲେ । ସେଠାରେ ସାମନ୍ତ ରାମଚନ୍ଦ୍ର ବ୍ରହ୍ମାଙ୍କ ପୁତ୍ର ନୀଳକଣ୍ଠଙ୍କୁ ନିଜ କନ୍ୟା ନିମିତ୍ତ ବରପାତ୍ରରୂପେ ସ୍ଥିର କରି ସେ ଜଳନ୍ତରରେ ଉପସ୍ଥିତ ହେଲେ । ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟ ଦୀର୍ଘକାଳ ପରେ ପୁଣି କବିସୂର୍ଯ୍ୟଙ୍କୁ ପାଇ ପରମ ଆନନ୍ଦିତ ହେଲେ ।

କବିସୂର୍ଯ୍ୟଙ୍କ କନ୍ୟାଟିର ଯଥାବିଧି ବିବାହ ଶେଷ ହେଲା । ତାଙ୍କ ଜାମାତା ମଧ୍ୟ ରାଜା ରାମଚନ୍ଦ୍ରଙ୍କଠାରୁ କେତେକ ଭୂସମ୍ପତ୍ତି ଦାନ ପାଇଲେ । ଏହାପରେ କବିସୂର୍ଯ୍ୟ ରାଜାନୁଗ୍ରହ ଲାଭ କରି ଜଳନ୍ତରରେ କିଛି ଦିନ ସୁଖରେ କଟାଇଲେ । କିନ୍ତୁ ଦୁର୍ଦ୍ଦୈବ-ବଶତଃ ଜଳନ୍ତରର ଗୁଣଗ୍ରାହୀ ରାଜା ରାମଚନ୍ଦ୍ର ଜ୍ୟେଷ୍ଠରାୟଙ୍କର ପରଲୋକ ହେଲା । କବିସୂର୍ଯ୍ୟଙ୍କୁ ଜଳନ୍ତରରେ ରହିବାକୁ ଆଉ ଭଲ ଲାଗିଲା ନାହିଁ ।

ଏଥିପୂର୍ବରୁ ଅଠଗଡ଼ର ରାଜା ବାଲୁଙ୍କେଶ୍ୱର ହରିଚନ୍ଦନ ଜଗଦେବ କବିସୂର୍ଯ୍ୟଙ୍କୁ ଅଠଗଡ଼ରେ ସପରିବାର ବାସ କରିବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ; କିନ୍ତୁ ରାଜା ରାମଚନ୍ଦ୍ରଙ୍କ ସ୍ନେହବଶତଃ ସେ ତାହା କରିପାରୁ ନ ଥିଲେ । ରାମଚନ୍ଦ୍ରଙ୍କ ମୃତ୍ୟୁ ପରେ ସେ ଅଠଗଡ଼ ଯାଇ ସେଠାରେ ବାସ କରିବାକୁ ଲାଗିଲେ ।

## —ପୁଣି ଅଠଗଡ଼ରେ—

ଅଠଗଡ଼ର ରାଜା ବାଲୁଙ୍କେଶ୍ୱର ଯେପରି ରୂପବାନ୍ ସେହିପରି ଗୁଣବାନ୍ ଥିଲେ । ତାଙ୍କ ପରି ସଂସ୍କୃତଜ୍ଞ ଓ ସଙ୍ଗୀତ-ଶାସ୍ତ୍ର-ନିପୁଣ ରାଜା ସେ ସମୟରେ ଅଳ୍ପ ଥିଲେ । କବିସୂର୍ଯ୍ୟଙ୍କ ସାହଚର୍ଯ୍ୟରେ ତାଙ୍କର ସଙ୍ଗୀତ ଓ ସାହିତ୍ୟ ଚର୍ଚ୍ଚା ଅତି ଗୁଣରେ ବୃଦ୍ଧି ପାଇଲା । ଅଠଗଡ଼ ରାଜଧାନୀରେ ପର୍ବତର ପାଦଦେଶରେ ଗୋଟିଏ ବଡ଼ କେତକୀ କୁଞ୍ଜ, ଗୋଟିଏ ନାଗେଶ୍ୱର ବଗିଚା ଓ କେତୋଟି ବୃହତ୍ ପୁଷ୍କରିଣୀ ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି

ମନୋରମ ସ୍ଥାନଟି ରାଜାଙ୍କର ସଙ୍ଗୀତ ଆଲୋଚନା ନିମିତ୍ତ ଉଦ୍ଦିଷ୍ଟ ଥିଲା । ଓଡ଼ିଶା ତଥା ଅନ୍ୟ ସଙ୍ଗୀତଜ୍ଞମାନେ ବହୁ ସଂଖ୍ୟାରେ ଆଠଗଡ଼ରେ ଅବସ୍ଥାନ କରୁଥିଲେ ।

ବାଲ୍ୟକାଳରୁ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ରାଧାକୃଷ୍ଣ ତାଙ୍କର ଇଷ୍ଟଦେବତା । ତେଣୁ ରାଧାକୃଷ୍ଣଙ୍କର ଲୀଳା ବିଷୟର ଅବଲମ୍ବନରେ କବି ଅନେକ ସଙ୍ଗୀତ ରଚନା କରି ରାଜାଙ୍କୁ ଉପହାର ଦେଉଥିଲେ । ବଳଦେବ କବି-ପ୍ରତିଭା ଧେନି ଜନ୍ମି ଥିଲେ । ତାଙ୍କ ମୁଖରୁ ସ୍ୱତଃ କବିତାର ଧାରା ବହି ଆସୁଥିଲା ଏବଂ ଅନ୍ୟ ଲୋକେ ତାହା ଲେଖି ନେଉଥିଲେ । ସେ ଯୌବନରୁ ସୁକବି ପେଦ୍ୱପର ପୂଜାସ୍ଥିତ ଥିଲେ । କିନ୍ତୁ ତାଙ୍କର ଅଧିକାଂଶ ସଙ୍ଗୀତ ରାଜସଭାରେ ଗାୟକମାନେ ଗାଉଥିଲେ । କବିସୂର୍ଯ୍ୟ ଏହି ଗାୟକମାନଙ୍କୁ ଉପଦେଶ ଦେଉଥିଲେ ମାତ୍ର ।

ଆଠଗଡ଼ ଅବସ୍ଥାନ କାଳରେ କବିସୂର୍ଯ୍ୟ ତାଙ୍କର ଈର୍ଷାଳୁ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ବ୍ୟଙ୍ଗ କରି କେତେକ କବିତା ଲେଖି ରାଜାଙ୍କୁ ଉପହାର ଦେଉଥିଲେ । ରାଜା ତାହାର ମର୍ମ ବୁଝି ପାରୁଥିଲେ ଏବଂ ସେ ଯେ ଜଣେ ଚତୁର ଗ୍ରାହକ ତାହାର ସୂଚନା ମଧ୍ୟ ଦେଉଥିଲେ । ତେଣୁ କବିସୂର୍ଯ୍ୟଙ୍କର ପ୍ରତିପତ୍ତିରେ କୌଣସି ବାଧା ଜନ୍ମି ନ ଥିଲା ।

ସଂସ୍କୃତରେ ଗଦ୍ୟପଦ୍ୟମୟ କାବ୍ୟକୁ ଚମ୍ପୂ କାବ୍ୟ କୁହାଯାଏ । ବଳଦେବ ରାଧାକୃଷ୍ଣଙ୍କୁ ଅବଲମ୍ବନ କରି ଓଡ଼ିଆରେ ଗୋଟିଏ ଚମ୍ପୂ କାବ୍ୟ ରଚନା କଲେ । କିନ୍ତୁ ସେ ଗଦ୍ୟାଂଶଟି ଓଡ଼ିଆରେ ନ ଲେଖି ସଂସ୍କୃତରେ ଲେଖିଲେ ଓ ପ୍ରତି ସଙ୍ଗୀତ

ଶେଷରେ ଗୋଟିଏ ଲେଖାଏଁ ସଂସ୍କୃତ ଶ୍ଳୋକ ଦେଲେ । ସଂସ୍କୃତ ଶ୍ଳୋକ ଓ ଗଦ୍ୟାଂଶରେ ପରବର୍ତ୍ତୀ ସଙ୍ଗୀତର ଭାବ ସୂଚିତ ହୋଇଅଛି । ଏହି ଅପୂର୍ବ କାବ୍ୟଟିର ନାମ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' । ଏଥିରେ ଚଉତିଶଟି ସଙ୍ଗୀତ ଅଛି ଓ ସେଗୁଡ଼ିକ କ ଠାରୁ କ୍ଷ ପର୍ଯ୍ୟନ୍ତ ଚଉତିଶଟି ଅକ୍ଷରକୁ ଅନୁସରଣ କରିଅଛନ୍ତି । ଭାବଗାମ୍ଭୀର୍ଯ୍ୟ, ରଚନାନୈପୁଣ୍ୟ, ଗାନୋପଯୋଗିତା – ଯେ କୌଣସି ଦିଗରୁ ଦେଖିଲେ ଏ ସଙ୍ଗୀତମାନଙ୍କର ଉତ୍କର୍ଷ ସ୍ୱୀକାର୍ଯ୍ୟ । କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଉତ୍କଳସାହିତ୍ୟ ଭଣ୍ଡାରରେ କୋହିନୁର ପରି ଚିରଦିନ ପାଇଁ ଉଜ୍ଜ୍ୱଲ୍ୟମାନ ହୋଇଥିବ । ଏହି କାବ୍ୟର ପ୍ରତ୍ୟେକ ସଙ୍ଗୀତ ଅଠଗଡ଼ର ରାଜା ବାଲ୍‌କେଶ୍ୱର ହରିଚନ୍ଦନଙ୍କ ନାମରେ ଭଣିତ କରାଯାଇଅଛି ।

## —ପାରଳାରେ—

ବଳଦେବଙ୍କର ସୁଖ୍ୟାତି ସମଗ୍ର ଓଡ଼ିଶା ବିଶେଷତଃ ଦକ୍ଷିଣ ଓଡ଼ିଶାରେ ବ୍ୟାପି ଯାଇଥିଲା । ପାରଳାଖେମୁଣ୍ଡିର ରାଜା ପୁରୁଷୋତ୍ତମ ନାରାୟଣ ଦେବଙ୍କ ଅନ୍ତେ ତାଙ୍କର ଅପ୍ରାପ୍ତବୟସ୍କ ପୁତ୍ରଙ୍କ ଗୃହଶିକ୍ଷକରୂପେ ବଳଦେବ ନିଯୁକ୍ତ ହେଲେ । ଏହି ସମୟରେ ପାରଳା ରାଜ୍ୟ ଘୋର ଅଶାନ୍ତିରେ ପୂର୍ଣ୍ଣ ଥିଲା । ରାଜ୍ୟ ମଧ୍ୟରେ ବିଦ୍ରୋହ ଘଟିବାରୁ ରାଜ୍ୟ ଇଂରେଜ ସରକାରଙ୍କର ଶାସନାଧୀନ ରହିଲା । ଅପ୍ରାପ୍ତବୟସ୍କ ରାଜାଙ୍କର ଜୀବନ ନିରାପଦ ରଖି ଶିକ୍ଷା ଦେବା ନିମନ୍ତେ ବଳଦେବଙ୍କୁ ଯଥେଷ୍ଟ କୌଶଳ ଓ ସାବଧାନତା ଅବଲମ୍ବନ କରିବାକୁ ପଡ଼ିଥିଲା । ବଳଦେବ ପ୍ରାୟ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ସୁଖ୍ୟାତିର ସହିତ ପାରଳାରେ କାର୍ଯ୍ୟ କରିଥିଲେ ।

ପରେ ଆଠଗଡ଼ର ରାଜା ବାଲ୍ମିକେଶ୍ୱର ହରିଚନ୍ଦନ ପୃଷ୍ଠବ୍ରଣ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣର ଆଶା ତ୍ୟାଗ କରିଥିଲେ । ଅସ୍ତ୍ର ଚିକିତ୍ସା ନିମନ୍ତେ ରାଜା ଏକାନ୍ତ ଅନିଚ୍ଛୁକ । ରାଜା ଶେଷ ଅବସ୍ଥାରେ କବିଙ୍କୁ ଦେଖିବା ଇଚ୍ଛାରେ ଡକାଇ ପଠାଇଲେ । ଚତୁର ବଳଦେବ ଦେଖିଲେ ଯେ ରାଜାଙ୍କର ବ୍ରଣଟି ଫାଟିଯିବା ଉପରେ, କେବଳ ସେଥିପାଇଁ ଉପଯୁକ୍ତ ଶରୀରଚାଳନା ଆବଶ୍ୟକ । କବିସୂର୍ଯ୍ୟ କୌଶଳରେ ଗୋଟିଏ ହାସ୍ୟରସପୂର୍ଣ୍ଣ ଗଳ୍ପର ଅବତାରଣା କଲେ । ଏପରି ଭାବ ଭଙ୍ଗୀ ସହ ସେ ଗଳ୍ପଟି କହିବାକୁ ଲାଗିଲେ ଯେ, ରାଜା ରୋଗ ଯନ୍ତ୍ରଣା ଭୁଲିଯାଇ ହସିବାରେ ଲାଗିଲେ ଓ ହସୁ ହସୁ ବ୍ରଣଟି ଫାଟିଗଲା । କବିସୂର୍ଯ୍ୟଙ୍କର ଉଦ୍ଦେଶ୍ୟ ସିଦ୍ଧ ହେଲା । ଏହି ଗଳ୍ପ "ହାସ୍ୟକଲ୍ଲୋଳ" ନାମରେ କଥିତ ।

ଗୁଣଗ୍ରାହୀ ରାଜା କବିଙ୍କୁ ଯଥେଷ୍ଟ ଭୂସମ୍ପତ୍ତି ଓ ମାସିକ ଏକଶହ ଟଙ୍କା ବୃତ୍ତି ଦେଇ ଆଠଗଡ଼ରେ ରଖାଇଲେ ।

## —ମଞ୍ଜୁରୀରେ ମେନେଜର—

ମଞ୍ଜୁରୀ ରାଜ୍ୟର ପରିଚାଳନାରେ ନାନା ବିଶୃଙ୍ଖଳା ଦେଖାଯିବାରୁ ଗଞ୍ଜାମର ତତ୍କାଳୀନ ଇଉରୋପୀୟ କଲେକ୍ଟର କବିସୂର୍ଯ୍ୟଙ୍କୁ ଏହାର ମେନେଜର ପଦରେ ନିଯୁକ୍ତ କଲେ । କଲେକ୍ଟରଙ୍କର ନିର୍ବାଚନ ଉପଯୁକ୍ତ ଥିଲା, ସନ୍ଦେହ ନାହିଁ । ବଳଦେବଙ୍କ ବୁଦ୍ଧିଚାତୁରୀପ୍ରଭାବ ରାଜ୍ୟର ବିଦ୍ରୋହାନଳ ନିର୍ବାପିତ ହେବା ସଙ୍ଗେ ସଙ୍ଗେ ତାହାର ଶ୍ରୀବୃଦ୍ଧି ହେବାକୁ ଲାଗିଲା; କିନ୍ତୁ କବିସୂର୍ଯ୍ୟ ଏହି କାର୍ଯ୍ୟରେ ଦୀର୍ଘକାଳ ରହି ନ ଥିଲେ । ରାଜା ଓ ରାଜମାତାଙ୍କ

ସହ ମତଭେଦ ଘଟିବାରୁ ସେ କାର୍ଯ୍ୟ ତ୍ୟାଗ କରିଥିଲେ । ତଦନନ୍ତର ସେ ବ୍ରହ୍ମପୁରର ବାଲକ ପେଣ୍ଠରେ ଶାନ୍ତିରେ ବାସ କରିବାକୁ ଲାଗିଲେ । ଏହିଠାରେ ବୃଦ୍ଧ ବୟସରେ ତାଙ୍କର ଗୋଟିଏ ପୁତ୍ର ଜନ୍ମିଥିଲା । ତାହାର ନାମ ବିଶ୍ୱନାଥ ।

## —ତିରୋଧାନ—

ଅଠଗଡ଼ର ରାଜା ମହୋଦୟ କବିସୂର୍ଯ୍ୟଙ୍କୁ ଅଠଗଡ଼ରେ ସ୍ଥାୟୀ ଭାବରେ ବସବାସ କରି ରହିବା ନିମନ୍ତେ ନିମନ୍ତ୍ରଣ କରି ନେଇ-ଥିଲେ । ସେଠାରେ ସେ ହଠାତ୍ ବସନ୍ତ ରୋଗରେ ଆକ୍ରାନ୍ତ ହେଲେ । ରାଜା ବାଲୁକେଶ୍ୱର ନିତାନ୍ତ ଦୁଃଖିତ ହୃଦୟରେ କବିବରଙ୍କୁ ସବାରରେ ବ୍ରହ୍ମପୁରକୁ ପ୍ରେରଣ କଲେ । ୧୮୪୫ ମସିହା ବୈଶାଖ ମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା ଦିନ କବି ଇହଧାମ ତ୍ୟାଗ କରିଗଲେ ।

ଯେତେ ଦିନ ପର୍ଯ୍ୟନ୍ତ ରାଜା ବାଲୁକେଶ୍ୱର ହରିଚନ୍ଦନ ଜୀବିତ ଥିଲେ, ତେତେ ଦିନପାଏ ସେ କବିସୂର୍ଯ୍ୟଙ୍କର ପୁତ୍ର ବିଶ୍ୱନାଥଙ୍କୁ ଉପଯୁକ୍ତ ଶିକ୍ଷା ଦୀକ୍ଷା ଦେବାରେ ଯତ୍ନବାନ୍ ଥିଲେ । କବିସୂର୍ଯ୍ୟଙ୍କର ବଂଶଧରମାନେ ଏବେ ମଧ୍ୟ ଗଞ୍ଜାମ ଜିଲାର ଲାଲଶାସନରେ ବାସ କରୁଅଛନ୍ତି ।

କାଳର କୁଟିଳ ଗତିରେ କବିଙ୍କର ନଶ୍ୱର ଶରୀର ଧ୍ୱଂସ ପାଇଯାଇଅଛି, କିନ୍ତୁ ଯେତେ ଦିନପାଏ ଓଡ଼ିଆ ସାହିତ୍ୟ ଥିବ ଏବଂ ଓଡ଼ିଶାରେ ସଙ୍ଗୀତର ଚର୍ଚ୍ଚା ଥିବ, ସେତେ ଦିନପାଏ

ଭକ୍ତକବି ଅମର ରହିବେ । କବିବର ରାଧାନାଥ କବିଗୁରୁଙ୍କ ଲକ୍ଷ୍ୟକରି ଯଥାର୍ଥରେ ଲେଖି ଯାଇଛନ୍ତି:—

ଧନ୍ୟ ରଥେ, ତୁମ୍ଭ ଜନ୍ମ ଶୁଭକ୍ଷଣେ
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ ॥
ତୁମ୍ଭ ମାଟିଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଅମ୍ଳାନ ॥

---

**ସମାପ୍ତ**

---

ମୁଦ୍ରାକର—ଶ୍ରୀ ଘନଶ୍ୟାମ ଦାଶ, ନବ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର